

ପ୍ରକାଶକ :

ଗଣ୍ଡଛିଷା ସମବାୟ ପ୍ରକାଶନ

ଗଣ୍ଡଛିଷା ରୋଡ୍, କଟକ-୧

ପ୍ରଥମ ପ୍ରକାଶ :

୧୯୮୮

ମୁଦ୍ରାକର :

ଶ୍ରୀ ଗୋପୀନାଥ ସାହୁ

ଗଣ୍ଡଛିଷା ସମବାୟ ପ୍ରେସ୍

ଗଣ୍ଡଛିଷା ରୋଡ୍, କଟକ-୭୫୩ ୦୦୧

ମୂଲ୍ୟ :

ପାଞ୍ଚ ଟଙ୍କା ।

## ଆମ ପ୍ରାଚୀନ ଶିକ୍ଷା-ପ୍ରଣାଳୀସଂପର୍କରେ—

ଭଗବାନ୍ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବଦ୍ ଗୀତାରେ କହିଛନ୍ତି-

ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତା ମହମ୍ ।। ୧୦-୩୨ ।।

ଅର୍ଥାତ୍—" ସଂସାରରେ ଯେତେ ପ୍ରାଣୀଙ୍କର ଉତ୍ପତ୍ତି ହୋଇଥାଏ, ସେ ସମସ୍ତଙ୍କର ଆଦି, ମଧ୍ୟ ଏବଂ ଅନ୍ତରେ ମୁଁ ହିଁ ବିଦ୍ୟମାନ । ଏଣୁ ସମଗ୍ର ସଂସାର ଓ ଜୀବଜଗତକୁ ବାସୁଦେବମୟ ଦେଖିବା ଉଚିତ । ସେହିଭଳି ବିଦ୍ୟାମାନଙ୍କ ମଧ୍ୟରେ ମୁଁ ହେଉଛି 'ଅଧ୍ୟାତ୍ମ ବିଦ୍ୟା' । ଯେଉଁ ବିଦ୍ୟାଦ୍ୱାରା ମନୁଷ୍ୟର କଲ୍ୟାଣ ହୋଇଥାଏ, ତାହା ଅଧ୍ୟାତ୍ମ ବିଦ୍ୟା ନାମରେ ଖ୍ୟାତ । ଅନ୍ୟାନ୍ୟ ସମସ୍ତ ବିଦ୍ୟାଦ୍ୱାରା ସାଂସାରିକ ଜ୍ଞାନଲାଭ ହେଲେ ସୁଦ୍ଧା, ସେଗୁଡ଼ିକୁ ଜାଣିବାପରେ ଆଉ କିଛି ଜାଣିବା ବାକି ରହିଯାଏ । ପରନ୍ତୁ ଅଧ୍ୟାତ୍ମ ବିଦ୍ୟା ପ୍ରାପ୍ତ ହେବାପରେ ଆଉ କିଛି ଜାଣିବା ବାକି ରହେ ନାହିଁ ।

ଏହି ଦୃଷ୍ଟିକୋଣର ଅନ୍ତରାଳରେ ତ୍ରିକାଳଜ୍ଞ ଋଷିଗଣ ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ୟାସ-ଏହିଭଳି ଚାରିଗୋଟି ଆଶ୍ରମର ବ୍ୟବସ୍ଥା କରିଥିଲେ । ଏହି ବ୍ୟବସ୍ଥା ଅନୁଯାୟୀ ଶିଷ୍ୟମାନେ ବ୍ରହ୍ମଚର୍ଯ୍ୟ ବ୍ରତର କଠୋର ନିୟମକୁ ପାଳନ କରିବା ସଙ୍ଗେ ସଙ୍ଗେ ବ୍ୟାବହାରିକ, ଲୌକିକ ଓ ପାରଲୌକିକ କଲ୍ୟାଣପ୍ରଦ ବିଦ୍ୟା-ମାନ ଅଧ୍ୟୟନ କରି ଶରୀର, ମନ ଓ ବାଣୀଦ୍ୱାରା ସୁସ୍ଥ, ପବିତ୍ର ଓ ସଂଯତ ଚିତ୍ତ ହୋଇ ଗୁରୁକୁଳରୁ ଫେରିଆସି ଗୃହସ୍ଥାଶ୍ରମରେ ପ୍ରବେଶ କରିଥାନ୍ତି । ପ୍ରାଚୀନ କାଳରେ ଏହା ହିଁ ଥିଲା ଆର୍ଯ୍ୟ ଶିକ୍ଷା ବ୍ୟବସ୍ଥାର ପ୍ରକୃତ ସ୍ୱରୂପ । ଏହି ଗୁରୁକୁଳ ଆଶ୍ରମ ଶିକ୍ଷା ଯେଉଁ ଅବଧିଯାଏ ପ୍ରଚଳିତ ଥିଲା, ସେହି ସମୟଯାଏ ପ୍ରତ୍ୟେକ ଶ୍ରେଣୀର ନାଗରିକ ସୁଖରେ କାଳାତିପାତ କରୁଥିଲେ । ଯେଉଁ ସମୟରୁ ଏହାର ବ୍ୟତିକ୍ରମ ହେବାକୁ ଲାଗିଲା, ସେହିଦିନଠାରୁ ଆମ ଶିକ୍ଷା ବ୍ୟବସ୍ଥାର ମୂଳଦୁଆ ଦୋହଲିବାକୁ ଲାଗିଲା । ତା'ର କୁପରିଣାମ ସ୍ୱରୂପ ଆଧୁନିକ ଶିକ୍ଷାପ୍ରାପ୍ତ ଜଣେ ଯୁବକ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିବାପାଇଁ ମଧ୍ୟ କୁଣ୍ଠିତ ଏବଂ ଆମର ସମସ୍ତ ବିଧି ବ୍ୟବସ୍ଥାକୁ ବୁଝିବାପାଇଁ ଉଦ୍ୟମ ନ କରି—"କୁସଂସ୍କାରପୂର୍ଣ୍ଣ ବିଚାର" ବୋଲି ମତପ୍ରକାଶ କରିବାରେ ସଂକୋଚବୋଧ କରୁ ନାହିଁ । ତା' ଛଡ଼ା ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକମାନଙ୍କ ମଧ୍ୟରେ କେତୋଟି ଦୋଷ, ଦୁର୍ବଳତା ବହୁଳ-ଭାବରେ ଲକ୍ଷ୍ୟ କରାଯାଇପାରେ । ଯଥା—ପ୍ରାଚୀନତାପ୍ରତି ଅରୁଚି, ପାରମ୍ପରିକ କୁଳ ବୃତ୍ତିରେ ଅଶ୍ରଦ୍ଧା, ଧର୍ମ ଓ ଈଶ୍ୱରଙ୍କପ୍ରତି ଅବିଶ୍ୱାସ, ବିଳାସପୂର୍ଣ୍ଣ ଜୀବନପ୍ରତି ଆଗ୍ରହ ପ୍ରତ୍ୟେକ ଅବସ୍ଥାରେ ସଂଯମ ଆଚରଣର ଅଭାବ, ବ୍ରହ୍ମଚର୍ଯ୍ୟ ପାଳନରେ ଅବହେଳା ସରଳତାର ଅଭାବ ଏବଂ ମାତା,ପିତା ଓ ଗୁରୁଜନମାନଙ୍କ ପ୍ରତି ଅସମ୍ମାନଜନକ ବ୍ୟବହାର । ବର୍ତ୍ତମାନର ଶିକ୍ଷାଦାନ ପ୍ରଣାଳୀରେ ଦେଖାଯାଉଥିବା ଦୋଷ, ତ୍ରୁଟି ଗୁଡ଼ିକର ସଂଶୋଧନ ଓ ପରିବର୍ତ୍ତନଦ୍ୱାରା ଏଭଳି ବ୍ୟବସ୍ଥା ହେବା ଉଚିତ୍, ଯେଉଁ-ଥିରେ କି ଶିକ୍ଷାର୍ଥୀଙ୍କ ମନରେ ପ୍ରଭାବ ଉତ୍ପନ୍ନ କଲାଭଳି କ୍ରିୟାତ୍ମକ ଉପାୟ ଗ୍ରହଣ କରାଯାଇପାରିବ । ଏହି କାର୍ଯ୍ୟର ସଫଳ ରୂପାୟନପାଇଁ ସଦ୍ ଗୁରୁଙ୍କର

ଆବଶ୍ୟକତା ବି କମ ନୁହେଁ । ଉପନିଷଦ୍ ମତରେ ବ୍ରହ୍ମଜ୍ଞ, ସଂଯତ ଇନ୍ଦ୍ରିୟ-ସଂପନ୍ନ, ପ୍ରଶାନ୍ତଚିତ୍ତ, ଶାନ୍ତ,ଜିତେନ୍ଦ୍ରିୟ, କୁଳୀନ, ଶୁଦ୍ଧ ବେଶଧାରୀ, ପବିତ୍ର-ଆଗ୍ଭର-ସମ୍ପନ୍ନ ସୁ ପ୍ରତିଷ୍ଠିତ, ଶୁଦ୍ଧ, ଦକ୍ଷ, ବାକ୍‌ପତି, ଅହଂକାର ରହିତ, ନିର୍ବିକାର ଶ୍ରୀସଂପନ୍ନ, ଧର୍ମାଚରଣ-ତତ୍ପର, ଦାନଶୀଳ, ଲକ୍ଷ୍ମୀବାନ୍, ମନ୍ତ୍ର-ତନ୍ତ୍ର ବିଶାରଦ, ରୋଗହୀନ, ତପସ୍ୱୀ, ସଦାଧ୍ୟାନପରାୟଣ, ଆଗମ-ଅର୍ଥ-ବିଶେଷଜ୍ଞ ଆଦି ଗୁଣ ସମ୍ପନ୍ନ ବ୍ୟକ୍ତି ହିଁ ଗୁରୁରୂପରେ ଶିଷ୍ୟମାନଙ୍କୁ ମନୋବାଞ୍ଛିତ ଶିକ୍ଷାଦାନ କରିବାରେ ସମର୍ଥ ହେବେ-ଏଥିରେ ସନ୍ଦେହ ନାହିଁ ।

ଏହି ପରିପ୍ରେକ୍ଷୀରେ ଶିଷ୍ୟର ଗୁଣାଗୁଣସଂପର୍କରେ ମଧ୍ୟ ବହୁ ବିଷୟର ଉଲ୍ଲେଖ କରାଯାଇଅଛି । ଯଥା-ଶିଷ୍ୟ ଶୁଦ୍ଧାତ୍ମା, କୁଳୀନ, ଆସ୍ତିକ, ଜିତେନ୍ଦ୍ରିୟ, ପୁରୁଷାର୍ଥ-ପରାୟଣ, ସୁନ୍ଦର, ସୁମୁଖ, ସ୍ୱଚ୍ଛ, ସୁଲଭ, ଶ୍ରଦ୍ଧାବାନ, ସ୍ଥିରଚିତ୍ତ, ଲୋଭରହିତ, ଗୁରୁମନ୍ତ୍ର ଓ ଦେବତାଙ୍କପ୍ରତି ଦୃଢ଼ ଭକ୍ତି ବିଶ୍ୱାସ ସଂପନ୍ନ, ଆଜ୍ଞାପାଳନକାରୀ. ଭକ୍ତି ପରାୟଣ, ପିତୃ-ମାତୃଭକ୍ତ ଏବଂ ଅଭିମାନ ରହିତ-ହେବା ଉଚିତ୍ । ଏହାର ପ୍ରତିକୂଳ ଆଚରଣକାରୀ ଶିଷ୍ୟ ଗୁରୁଙ୍କପାଇଁ ଦୁଃଖଦାୟୀ ହୋଇଥାଏ । ସେହିଭଳି ଆଗ୍ଭର୍ଯ୍ୟଙ୍କପାଇଁ ତ୍ୟାଜ୍ୟ ଶିଷ୍ୟସଂପର୍କରେ ବହୁ ବିଷୟର ବର୍ଣ୍ଣନା କରି କୁହାଯାଇଅଛି । ଯଥା-କାମକ, ଲୋକନିନ୍ଦିତ, କୁଟିଳ, ଅସତ୍ୟବାଦୀ, ଅବିନୀତ, ଅସମର୍ଥ, ପ୍ରଜ୍ଞାହୀନ, ଶତ୍ରୁପ୍ରିୟ, ସର୍ବଦା ପାପକର୍ମ-ନିରତ, ମୂଢ଼, ବିଦ୍ୟାହୀନ , ବୈଦିକ କ୍ରିୟା ରହିତ ତଥା ଆଶ୍ରମ-ଆଗ୍ଭର ଶୂନ୍ୟ, ଅଶୁଦ୍ଧ ଅନ୍ତଃକରଣ, ଶ୍ରଦ୍ଧାହୀନ, ଧୈର୍ଯ୍ୟରହିତ, କ୍ରୋଧୀ, ଭ୍ରାନ୍ତ, ଅସତ୍ ଚରିତ୍ର, ଗୁଣହୀନ, ପରସ୍ତ୍ରୀ ଲୋଲୁପ, ଭକ୍ତିହୀନ ଏବଂ ନିନ୍ଦାର ପାତ୍ର ଶିଷ୍ୟ ବର୍ଜ୍ଜନୀୟ । ସାମୂହିକ ଶିକ୍ଷା ବ୍ୟବସ୍ଥାରେ ଏଭଳି ଚିନ୍ତାଧାରାକୁ ରୂପ ଦେବା ମଧ୍ୟ ଦୁରୂହ ମନେହୁଏ । ଏଣୁ ପ୍ରଚଳିତ ଶିକ୍ଷାବ୍ୟବସ୍ଥା ମଧ୍ୟରୁ ଯଥାସମ୍ଭବ ଦୋଷ, ତ୍ରୁଟି ଦୂରକରି ପ୍ରାଚୀନ ଶିକ୍ଷା ପଦ୍ଧତି ମଧ୍ୟରୁ ଆବଶ୍ୟକ ମତେ ସାର ଗ୍ରହଣଦ୍ୱାରା ନୂତନ ଶିକ୍ଷାନୀତି ପ୍ରଣୟନ ହେବା ଆବଶ୍ୟକ । ତେବେ ଯାଇ ଆମ ଦେଶର ପୂର୍ବ ଗୌରବ ଫେରି ଆସିବା ସମ୍ଭବ ହେବ । ଏସଂପର୍କରେ ଆମର ସମ୍ମାନନୀୟ ଶିକ୍ଷାଶାସ୍ତ୍ରୀଗଣ ଉପଯୁକ୍ତ ମାର୍ଗଦର୍ଶନ ଦେବେ ବୋଲି ଆଶା କରାଯାଏ ।

ଶେଷରେ ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି ବହୁ ଶ୍ରମ ସ୍ୱୀକାର କରି ଏହି ଉପାଦେୟ ପୁସ୍ତିକାଟି ଲେଖିଦେଇଥିବାରୁ ରକ୍ଷାଭକ୍ଷା ସମବାୟ ପ୍ରକାଶନ ପକ୍ଷରୁ ତାଙ୍କପ୍ରତି କୃତଜ୍ଞତା ଜ୍ଞାପନ କରୁଅଛି । ଆଶା, ପାଠକ-ପାଠିକା ଏହାଦ୍ୱାରା ଉପକୃତ ହେବେ ।। ଇତି ।।

ସଂପାଦକ
ରକ୍ଷାଭକ୍ଷା ସମବାୟ ପ୍ରକାଶନ




ଉଦ୍ଦେଶ୍ୟ: —ମାନବ ଜୀବନର ବିଶିଷ୍ଟ ଉଦ୍ଦେଶ୍ୟମାନଙ୍କୁ ଧ୍ୟାନରେ ରଖି ପ୍ରାଚୀନ ଶିକ୍ଷା ପ୍ରଣାଳୀର ବିକାଶ କରାଯାଇଥିଲା । ଭାରତର ପ୍ରାଚୀନ ଋଷିମାନେ ଏହି ଜଗତ୍ ଏବଂ ଜୀବନର ଗ୍ରନ୍ଥିମାନଙ୍କୁ ଖୋଲିଦେବା ମାନବ ଜୀବନର ମହାନ୍ କର୍ତ୍ତବ୍ୟ ବୋଲି ଧରି ନେଇଥିଲେ । ଋଷିମାନେ ଭଲଭାବରେ ଜାଣି ନେଇଥିଲେ ଯେ ଯଦି ମୃତ୍ୟୁର ରହସ୍ୟ ଉଦ୍‌ଘାଟିତ କରାଯାଇପାରିବ, ତେବେ ଏହି ସଂସାରର ବହୁ ଦୁଃଖର ଅନ୍ତ ହୋଇପାରିବ । ଏହି ଋଷିମାନେ ଆତ୍ମା ଓ ପରମାତ୍ମାର ସମ୍ବନ୍ଧ ଏବଂ ଜୀବନ-ମରଣର ବିଭିନ୍ନ ଜଟିଳ ସମସ୍ୟାମାନଙ୍କୁ ବୁଝିବାରେ ଓ ବୁଝାଇବାରେ ନିଜର ଜୀବନ ବ୍ୟତୀତ କରିଥିଲେ । ଏ ସମ୍ବନ୍ଧରେ ବହୁ ସତ୍ୟ, ସନାତନ ସିଦ୍ଧାନ୍ତ ଏବଂ ତତ୍ତ୍ୱ ମଧ୍ୟ ସେମାନେ ବୁଝିଥିଲେ ଓ ବୁଝାଇଥିଲେ । ଏହିପରି ସେମାନେ ମାନବ-ଜୀବନକୁ ପାଶବିକତାର ଗର୍ତ୍ତରୁ ବାହାର କରି ବିଶାଳ ଏବଂ ଉଦାର ଉଦ୍ଦେଶ୍ୟମାନଙ୍କଦ୍ୱାରା ଯୁକ୍ତ କରିଦେଇଥିଲେ । ଏସବୁ ଉଦାତ୍ତ ଉଦ୍ଦେଶ୍ୟମାନଙ୍କର ପୂର୍ତ୍ତି ମଧ୍ୟ ଯୋଗ୍ୟ ବ୍ୟକ୍ତିମାନଙ୍କଦ୍ୱାରା ହିଁ ହୋଇପାରେ । ଏହି ଯୋଗ୍ୟତାକୁ ପ୍ରାପ୍ତ କରିବାର ବିଷୟରଦ୍ୱାରା ଶିକ୍ଷା ପ୍ରଣାଳୀ ସ୍ଥିର ହୋଇଥିଲା ଏବଂ ଆଶ୍ରମ-ବ୍ୟବସ୍ଥାର ଆୟୋଜନ କରାଯାଇଥିଲା । ଏହି ପ୍ରକାର ପ୍ରାଚୀନ ଶିକ୍ଷା ପ୍ରଣାଳୀର ଉଦ୍ଦେଶ୍ୟ ହେଉଛି ମନୁଷ୍ୟର ନିସର୍ଗ-ସିଦ୍ଧ ଶକ୍ତି-ମାନଙ୍କର ସମ୍ୟକ ବିକାଶ ସାଧନ କରି ପ୍ରକୃତ ଅର୍ଥରେ ମନୁଷ୍ୟ ତିଆରି କରିବା, ଯଦ୍ୱାରା ସେହି ମନୁଷ୍ୟ ଜୀବନର ସମସ୍ୟାମାନଙ୍କର ମାନବିକ ସମାଧାନ କରିବାରେ ତତ୍ପର ଓ ସମର୍ଥ ହୋଇପାରିବ ।

ବ୍ରହ୍ମଚର୍ଯ୍ୟାଶ୍ରମ: —

ଭାରତୀୟ ଆଶ୍ରମ ବ୍ୟବସ୍ଥାର ଅନ୍ତର୍ଗତ ବ୍ରହ୍ମଚର୍ଯ୍ୟାଶ୍ରମର ଶିକ୍ଷା-ପ୍ରଣାଳୀସହିତ ବିଶେଷ ସମ୍ବନ୍ଧ ରହିଛି । ଏହି ଆଶ୍ରମର ବିକାଶ ଅତ୍ୟନ୍ତ ପ୍ରାଚୀନକାଳରୁ ଭାରତରେ

ହୋଇଥିଲା । (ଅଥର୍ବବେଦ; ୧୧।୫)ରେ ଏହାର ବିକଶିତ ସ୍ୱରୂପର ଦର୍ଶନ ମିଳେ। ସେଥିରେ ବ୍ରହ୍ମଚାରୀ, ଆଚାର୍ଯ୍ୟ, ସମିଧ୍, ଭୈକ୍ଷ୍ୟ, ମେଖଳା, ବ୍ରହ୍ମଚର୍ଯ୍ୟାଦିର ସ୍ପଷ୍ଟ ଉଲ୍ଲେଖ ରହିଅଛି । ଅଥର୍ବବେଦର ଏହି ବର୍ଣ୍ଣନକୁ ପଢ଼ିଲେ ତତ୍କାଳୀନ ଶିକ୍ଷା ପ୍ରଣାଳୀର ସ୍ୱରୂପ ଏବଂ ଉଦ୍ଦେଶ୍ୟର ପରିଚୟ ମିଳିଥାଏ । ଉକ୍ତ ବେଦରେ ଲେଖା ଯାଇଛି ଯେ "ବ୍ରହ୍ମଚର୍ଯ୍ୟେଣ ତପସା ଦେବା ମୃତ୍ୟୁମପାଘ୍ନତ ।।" ଅର୍ଥାତ୍ "ବ୍ରହ୍ମଚର୍ଯ୍ୟ ଏବଂ ତପସ୍ୟାଦ୍ୱାରା ଦେବତାମାନେ ମୃତ୍ୟୁକୁ ମଧ୍ୟ ବିନାଶ କରନ୍ତି ।।" (ଅଥର୍ବ–ବେଦ ୧୧।୫।୧୯) । ଏହିପରି ବ୍ରହ୍ମଚର୍ଯ୍ୟଦ୍ୱାରା ମୃତ୍ୟୁର ମଧ୍ୟ ହନନ କରଯାଇ–ପାରେ । ଭାରତୀୟ ସଂସ୍କୃତିରେ ଶିକ୍ଷା ପ୍ରଣାଳୀର ଏତେ ଉଚ୍ଚ ଆଦର୍ଶ ଅନ୍ୟ କୌଣସି ସଂସ୍କୃତିରେ ଉପଲବ୍ଧ ହୁଏ ନାହିଁ । ପ୍ରାଚୀନ ଭାରତୀୟମାନଙ୍କ ଆଗରେ ଏହି ଆଦର୍ଶ ରଖାଯାଇଥିଲା ଯେ ବ୍ରହ୍ମଚର୍ଯ୍ୟ ଏବଂ ତପ ପ୍ରାପ୍ତ କରି ତାହାର ସହାୟତାରେ ମୃତ୍ୟୁର ହନନଦ୍ୱାରା ସେ ଅମରତ୍ୱ ପ୍ରାପ୍ତ କରିପାରିବ । ଏଥିରେ ପ୍ରାଚୀନ ଭାରତୀୟ ଶିକ୍ଷା ପ୍ରଣାଳୀର ମୂଳ ରହସ୍ୟ ନିହିତ ଅଛି । ଏହି ମହାନ୍ ଉଦ୍ଦେଶ୍ୟକୁ କାର୍ଯ୍ୟରୂପ, ଦେବାପାଇଁ ବର୍ଗ–ଚତୁଷ୍ଟୟର ଆୟୋଜନ କରଯାଇଥିଲା, ଯାହା ଧର୍ମ, ଅର୍ଥ, କାମ ମୋକ୍ଷ ଆଦି ନାମମାନଙ୍କରେ ଅଭିହିତ ହୋଇଥିଲା । ବ୍ରହ୍ମଚର୍ଯ୍ୟାଶ୍ରମରେ ଏହି ପ୍ରକାର ଶିକ୍ଷା ଦିଆଯାଉଥିଲା, ଯଦ୍ୱାରା ଏହି ଚାରି ବର୍ଗ ସିଦ୍ଧ କରିବାର ସାମର୍ଥ୍ୟ ପ୍ରାପ୍ତ କରାଯାଇପାରିବ । ଏହା ବ୍ୟତୀତ ଏହି ଆଶ୍ରମରେ ମାନବ ଜୀବନର ସର୍ବାଙ୍ଗୀଣ ବିକାଶପାଇଁ ମଧ୍ୟ ସମ୍ପୂର୍ଣ୍ଣ ସୁଯୋଗ ଥିଲା । ଏହି ଆଶ୍ରମରେ ଶାରୀରିକ, ମାନସିକ, ଆଧ୍ୟାତ୍ମିକ ଆଦି ଶକ୍ତିମାନଙ୍କ ବିକାଶର ଆରମ୍ଭ କରଯାଉଥିଲା । ପ୍ରାଚୀନ କାଳର ବିଦ୍ୟାର୍ଥୀ କେବଳ ବିଦ୍ୟାର୍ଥୀ ନ ଥିଲେ କିନ୍ତୁ ତାକୁ ବ୍ରହ୍ମଚାରୀ ବୋଲି କୁହାଯାଉଥିଲା । "ବ୍ରହ୍ମଚର୍ଯ୍ୟ", "ବ୍ରହ୍ମଚାରୀ" ଶବ୍ଦମାନଙ୍କର ତାତ୍ପର୍ଯ୍ୟ ହେଲା ଯେ ସେ ବ୍ୟକ୍ତି ବା ସେପରି ଜୀବନ ଯହିଁରେ 'ବ୍ରହ୍ମ' ବା 'ସତ୍ୟ'କୁ ଅନୁସନ୍ଧାନ କରିବାରେ ସତତ ପ୍ରଯତ୍ନଶୀଳ । ତେଣୁ ବ୍ରହ୍ମଚାରୀକୁ ଏପରି ଜୀବନ–କ୍ରମ ଅନୁସରଣ କରିବାକୁ ପଡ଼ୁଥିଲା, ଯହିଁରେ ସେ ସତ୍ୟର ଅନୁସନ୍ଧାନ କରିପାରିବ ।

## ବ୍ରହ୍ମଚାରୀର ଜୀବନ: —

ପ୍ରାଚୀନ କାଳରେ ପ୍ରତ୍ୟେକ ବାଳକର ମନ ଉପରେ ଏଭଳି ଭାବ ଅଙ୍କିତ କରିଦିଆଯାଉଥିଲା ଯେ ସେ ହେଉଛି ସମାଜର ଜଣେ ଘଟକ, ସେ ପୂର୍ଣ୍ଣତୟା ସ୍ୱତନ୍ତ୍ର ନୁହେଁ । ସଂସାରକୁ ଆସିବା ମାତ୍ରେ ତା'ଉପରେ ମାତାଙ୍କ ଋଣ, ପିତାଙ୍କ ଋଣ ଏବଂ ଆଚାର୍ଯ୍ୟଙ୍କ ଋଣ ନ୍ୟସ୍ତ ରହୁଥିଲା । ଏହିସବୁ ଋଣର ପରିଶୋଧ କରିବାର

ସାମର୍ଥ୍ୟ ସେ ବ୍ରହ୍ମଚର୍ଯ୍ୟାଶ୍ରମରେ ହିଁ ପ୍ରାପ୍ତ କରିବ । ଏହିପରି ଧାରଣାଦେଇ ସାତ ବା ଆଠ ବର୍ଷର ବାଳକକୁ ବ୍ରହ୍ମଚର୍ଯ୍ୟାଶ୍ରମରେ ପ୍ରବିଷ୍ଟ କରାଯାଉଥିଲା । ଆଚାର୍ଯ୍ୟ ବା ଗୁରୁଙ୍କଦ୍ୱାରା ବାଳକକୁ ଆଶ୍ରମନ୍ତ୍ର ଦୀକ୍ଷା ଦିଆଯାଉଥିଲା । ଏହି ଅବସରରେ ତା'ର ଯଜ୍ଞୋପବୀତ ବା ଉପନୟନ—ସଂସ୍କାର ହେଉଥିଲା, ଯହିଁରେ ତାକୁ ଯଜ୍ଞୋପବୀତ ଧାରଣ କରିବାର ଅଧିକାର ମିଳୁଥିଲା । ଏହା ପରେ ସେ ଗୁରୁଙ୍କ ଆଶ୍ରମରେ ରହି ବିଦ୍ୟାଭ୍ୟାସ କରୁଥିଲା । ଅତି କମ୍‌ରେ ପଚିଶ ବର୍ଷର ଅବସ୍ଥା ପର୍ଯ୍ୟନ୍ତ ତା'ର ସେଠାରେ ରହିବା ଅନିବାର୍ଯ୍ୟ ଥିଲା । ଯଜ୍ଞୋପବୀତ ଧାରଣ କରିବା ପଶ୍ଚାତ୍ ବ୍ରହ୍ମଚାରୀ ଗୁରୁଙ୍କ ପରିବାରର ସଦସ୍ୟ ହୋଇଯାଉଥିଲା । ତା'ର ବିଦ୍ୟାଭ୍ୟାସର ସ୍ଥାନକୁ 'ଗୁରୁକୁଳ' କୁହାଯାଉଥିଲା । ସେଠାରେ ଗୁରୁ ଓ ଶିଷ୍ୟଙ୍କ ଭିତରେ ଆତ୍ମୀୟତାର ଭାବ ଉତ୍ପନ୍ନ ହେଉଥିଲା । ସତ୍ୟ, ତପ, ତ୍ୟାଗ ଆଦିର ମୂର୍ତ୍ତିମାନ୍ ବିଗ୍ରହ ସ୍ୱରୂପ ଗୁରୁଙ୍କ ସଚ୍ଚରିତ୍ରତା ଏବଂ ବ୍ୟକ୍ତିତ୍ୱର ପ୍ରଭାବ କୋମଳ-ହୃଦୟ ବ୍ରହ୍ମଚାରୀଙ୍କ ଉପରେ ପଡ଼ୁଥିଲା । ପ୍ରାଚୀନ ଭାରତର ଏହି ଅର୍ଦ୍ଧ-ନଗ୍ନ ଫକୀରଙ୍କ ପାଖରେ ରହି ସମ୍ରାଟ୍-ପୁତ୍ର ନିଜର ରାଜକୀୟ ଥାଟ ଏବଂ ଐଶ୍ୱର୍ଯ୍ୟକୁ ଭୁଲି ଯାଉଥିଲା ।

ଆଜିକାଲି ପରି ନୀଚ, ଉଚ୍ଚ, ଧନୀ, ଗରୀବ ଆଦିର ଭାବ ଏହି ଗୁରୁକୁଳରେ ଜାତ ହୋଇପାରୁ ନ ଥିଲା । କିମ୍ବା ଆଭିଜାତ୍ୟ ଶ୍ରେଣୀର ଛାତ୍ର-ଛାତ୍ରୀଙ୍କ ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ହେଉ ନ ଥିଲା । ଏହି ଗୁରୁକୁଳଗୁଡ଼ିକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଧ୍ୟ ଉପଯୁକ୍ତ ସ୍ଥାନରେ ପ୍ରତିଷ୍ଠିତ ହେଉଥିଲା । ଜଙ୍ଗଲରେ, କୌଣସି ନଦୀ ତୀରରେ ବା କୌଣସି ଛୋଟ ଗାଁ ପାଖରେ ପ୍ରତିଷ୍ଠିତ ହେଉଥିଲା, ଯେଉଁଠାରେ ଅତ୍ୟନ୍ତ ସରଳତାରେ ନିସର୍ଗର କୃତିର ସାକ୍ଷାତ୍‌କାର ହୋଇପାରୁଥିଲା । ପ୍ରକୃତି ଦେବୀଙ୍କ କୋଳରେ ବସି ଗୁରୁକୁଳର ବ୍ରହ୍ମଚାରୀ ନିଜର ନିସର୍ଗ-ସିଦ୍ଧ ଶକ୍ତିମାନଙ୍କର ବିକାଶ କରୁଥିଲା । ସେଠାର ବାତାବରଣ ଶୁଦ୍ଧ ରହୁଥିଲା । ଯେଉଁଠି ଶୁଦ୍ଧ ଜଳବାୟୁ ପ୍ରାପ୍ତ ହୁଏ ଏବଂ ସହରର ଦୁର୍ଗନ୍ଧମୟ ବାତାବରଣରୁ ବହୁ ଦୂରରେ ଅବସ୍ଥିତ ରହେ, ସେଠାରେ କାହାର ସ୍ୱାସ୍ଥ୍ୟ ଭଲ ନ ରହିବ ? ଏପରି ଶୁଦ୍ଧ ବାତାବରଣରେ ରହି ବ୍ରହ୍ମଚାରୀ ବିଦ୍ୟାଭ୍ୟାସ କରୁଥିଲା ।

ମନୁ (ମନୁସ୍ମୃତି:୨।୪୯—୨୪୯)ଙ୍କ ଅନୁସାରେ ବ୍ରହ୍ମଚାରୀପାଇଁ ଏକ ନିଶ୍ଚିତ ଚର୍ମ, ସୂତ୍ର, ମେଖଳା, ଦଣ୍ଡ, ବସନ ଆଦି ବିହିତ ଥିଲା, ଯାହାର ଉପଯୋଗ ବ୍ରତ ସମୟରେ ମଧ୍ୟ ହେଉଥିଲା । ମନୁସ୍ମୃତିରେ ଆଦେଶ ଦିଆଯାଇଛି ଯେ ବ୍ରହ୍ମଚାରୀ ଗୁରୁଙ୍କ ଘରେ ରହି ନିୟମମାନଙ୍କୁ ପାଳନ କରିବ । ନିତ୍ୟ ସ୍ନାନ ପୂର୍ବକ ଦେବର୍ଷି-ପିତୃ-ତର୍ପଣ ଶେଷ କରି ଦେବତାର୍ଚ୍ଚନା ଏବଂ ସମିଧାଧାନ କରିବ । ମଧୁ,

ମାଂସ, ଗନ୍ଧ, ମାଲ୍ୟ, ରସ, ସ୍ତ୍ରୀ, ପ୍ରାଣୀ-ହିଂସା ଆଦି ତା'ପାଇଁ ବର୍ଜିତ ଥିଲା । ସର୍ବତ୍ର ଏକାକୀ ହିଁ ଶୟନ କରିବ ଏବଂ କେବେ ହେଲେ ବୀର୍ଯ୍ୟ-ପାତ ହେବାକୁ ଦେବ ନାହିଁ । ସାୟଂ- ପ୍ରାତଃ ଅଗ୍ନିହୋତ୍ର କରିବ ଏବଂ ଭିକ୍ଷା ମଧ୍ୟ ମାଗି ଆଣିବ । ସର୍ବଦା ଅଧ୍ୟୟନରେ ଦତ୍ତଚିତ୍ତ ରହିବ, ଗୁରୁ କହନ୍ତୁ ବା ନ କହନ୍ତୁ । ମୁଣ୍ଡ ଜଟିଳ (ଜଟାଯୁକ୍ତ) ବା କେବଳ ଶିଖାଧାରୀ ରହିବ । ପବିତ୍ର ସ୍ଥାନରେ ସାୟଂ-ପ୍ରାତଃ ସନ୍ଧ୍ୟା କରିବ । ସର୍ବଦା ସଦ୍‌ବୃତ୍ତ ଧାରଣ କରିବାର ଚେଷ୍ଟା କରିବ । ଏହି ପ୍ରକାର ଯେଉଁ ବିପ୍ର ଅବିପ୍ଲୁତ ବ୍ରହ୍ମଚର୍ଯ୍ୟ ଧାରଣ କରେ ସେ ଉତ୍ତମ ସ୍ଥାନ ପ୍ରାପ୍ତ କରେ । ଏହିପରି ଯଦି ମନୁଙ୍କଦ୍ୱାର ନିର୍ଦ୍ଦିଷ୍ଟ ବ୍ରହ୍ମଚର୍ଯ୍ୟ-ଜୀବନର ନିୟମମାନଙ୍କ ଉପରେ ଭଲ-ଭବରେ ବିଗ୍ଭର କରଯାଏ, ତେବେ ପ୍ରାଚୀନ—କାଳୀନ ବ୍ରହ୍ମଗ୍ଭରୀର ଦୈନିକ ଜୀବନ ବିଷୟରେ ସ୍ପଷ୍ଟ ଜ୍ଞାନ ଜାତ ହୋଇପାରିବ । ବ୍ରହ୍ମଗ୍ଭରୀକୁ ପ୍ରତିଦିନ ପ୍ରାତଃକାଳ ବାହ୍ମମୁହୂର୍ତ୍ତରେ (ପ୍ରାତଃ ୪—୩୦ ବା ୫ ଘଣ୍ଟା ସମୟରେ) ଉଠିକରି ଶୌଚ, ସ୍ନାନ ଆଦିରୁ ନିବୃତ୍ତ ହୋଇ ସନ୍ଧ୍ୟୋପାସନ, ହବନ ଆଦି କରିବାକୁ ପଡ଼ୁଥିଲା । ଏହା ପରେ ସମିଧାହରଣ ବା ଭୈକ୍ଷ୍ୟପାଇଁ ଯିବାକୁ ପଡ଼ୁଥିଲା । କଦାଚିତ୍ ଭୈକ୍ଷ୍ୟ—ଚର୍ଯ୍ୟାର ସମୟ ଦିନ ଦିପହର ଥିଲା । ତତ୍‌ପଶ୍ଚାତ୍ ଗୁରୁଙ୍କ ପାଖରେ ବସି ବିଦ୍ୟା-ଭ୍ୟାସ କରିବାକୁ ପଡ଼ୁଥିଲା । ଭୋଜନୋପରନ୍ତ କିଛି ବିଶ୍ରାମ କଲପରେ ପୁନଃ ବିଦ୍ୟାଭ୍ୟାସରେ ଧ୍ୟାନ ଦେବାକୁ ପଡ଼ୁଥିଲା । ତାକୁ ଇନ୍ଦ୍ରିୟ—ନିଗ୍ରହର ବ୍ରତ ବଢ଼ କଡ଼ାଭବରେ ଧାରଣ କରିବାକୁ ପଡ଼ୁଥିଲା ଏବଂ ସବୁ ପ୍ରକାରେ ଗୁରୁଙ୍କର ସେବା—ଶୁଶ୍ରୂଷା କରିବାକୁ ପଡ଼ୁଥିଲା । ଏହିପରି ପବିତ୍ର ଓ ଶୁଦ୍ଧ କର୍ମମାନଙ୍କଦ୍ୱାରା ଗୁରୁକୁଳର ସ୍ୱାସ୍ଥ୍ୟପ୍ରଦ ବାତାବରଣରେ ବ୍ରହ୍ମଗ୍ଭରୀ ଉତ୍ତମରୂପେ ନିଜର ବିଭିନ୍ନ ଶକ୍ତିମାନଙ୍କର ଭଲଭବରେ ବିକାଶ କରିପାରୁଥିଲା ।

## ବିଭିନ୍ନ ବିଦ୍ୟାମାନଙ୍କର ଅଧ୍ୟୟନ :

ପ୍ରାଚୀନ ଭରତରେ ଯେଉଁ ବିଭିନ୍ନ ବିଦ୍ୟା ଏବଂ ଶାସ୍ତ୍ରମାନଙ୍କର ଆଶ୍ଚର୍ଯ୍ୟଜନକ ବିକାଶ ହୋଇଥିଲା, ସେଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ସେସବୁ ବିଦ୍ୟା ଓ ଶାସ୍ତ୍ରମାନଙ୍କର ଅଧ୍ୟୟନ, ଅଧ୍ୟାପନ ଆଦିର ଉତ୍କୃଷ୍ଟ ବ୍ୟବସ୍ଥା ଅବଶ୍ୟ ରହିଥିବ । ଗହ୍ୟାଦି ସୂତ୍ର ଏବଂ ସ୍ମୃତ୍ୟାଦି ଶାସ୍ତ୍ରମାନଙ୍କରେ ଗୁରୁକୁଳର ପାଠ୍ୟକ୍ରମରେ ବେଦର ପଠନ-ପାଠନକୁ ହିଁ ସମ୍ପୂର୍ଣ୍ଣ ମହତ୍ତ୍ୱ ଦିଆଯାଇଅଛି । ଏଥିରୁ ଏଭଳି ଭ୍ରମ ଉପୁଜିପାରେ ଯେ ଗୁରୁକୁଳମାନଙ୍କରେ କେବଳ ବେଦ-ପଠନ ବ୍ୟତୀତ ଆଉ କିଛି ହେଉ ନ ଥିଲା । ଯଥାର୍ଥରେ ବିଷୟ ଏପରି ନ ଥିଲା । ବେଦକୁ ସମ୍ୟକ୍‌ଭବରେ

ବୁଝିବାପାଇଁ ଛନ୍ଦ, ବ୍ୟାକରଣ, ନିରୁକ୍ତ, ନିଘଣ୍ଟୁ, ଜ୍ୟୋତିଷ, କଳ୍ପ ଆଦି ବିଭିନ୍ନ ବିଦ୍ୟା ଏବଂ ଶାସ୍ତ୍ରମାନଙ୍କର ପଠନ-ପାଠନ କରିବାକୁ ପଡ଼ୁଥିଲା । ଯଜ୍ଞବିଧି ଆଦିକୁ ବୁଝିବାପାଇଁ ଶୁଲ୍ବାଦି ସୂତ୍ରମାନଙ୍କର ପାଠନ କରଯାଉଥିଲା । ଯହିଁରେ ରେଖା ଗଣିତ (geometry)ର ଉପଯୋଗ କରଯାଇଅଛି । ଗଣିତ ଆଦି ବିଦ୍ୟାଗୁଡ଼ିକର ଜ୍ୟୋତିଷସହିତ ସମ୍ବନ୍ଧ ଅଛି । ଅତ ଏବ ସ୍ପଷ୍ଟ ହୁଏ ଯେ ବେଦ ପଠନପାଇଁ ମଧ୍ୟ ବିଭିନ୍ନ ବିଦ୍ୟାମାନଙ୍କର. ପଠନ ଅନିବାର୍ଯ୍ୟ ଥିଲା । ଏହିପରି ଯଦ୍ୟପି ବେଦାଧ୍ୟୟନ, ଯଜନ, ଯାଜନ ଆଦି ପଠନ ପାଠନର ଆବଶ୍ୟକୀୟ ଅଙ୍ଗ ଥିଲା, ତଥାପି ଅନ୍ୟ ବିଦ୍ୟାସବୁ ମଧ୍ୟ ପଢ଼ାଯାଉଥିଲା, ଯାହାର ଉଲ୍ଲେଖ ପ୍ରାଚୀନ ସାହିତ୍ୟରେ ମିଳିଥାଏ । ଛାନ୍ଦୋଗ୍ୟ ଉପନିଷଦ୍ ( ୭ । ୧ । ୨ )ରେ ଗୋଟିଏ ସ୍ଥଳରେ ମହର୍ଷି ସନତ୍କୁମାରଙ୍କ ପ୍ରଶ୍ନର ଉତ୍ତରରେ ମହର୍ଷି ନାରଦ କହିଛନ୍ତି– "ହେ ଭଗବାନ୍ ! ମୁଁ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଇତିହାସ ପୁରାଣ, ବେଦର ଅର୍ଥବିଧାୟକ ଗ୍ରନ୍ଥ, ପିତୃ ବିଦ୍ୟା, ରାଶିବିଦ୍ୟା, ଦୈବ ବିଦ୍ୟା, ନିଧି ବିଦ୍ୟା, ନାକୋବାକ୍ୟ ବିଦ୍ୟା, ଏକାୟନ ବିଦ୍ୟା, ଦେବ ବିଦ୍ୟା,ବ୍ରହ୍ମ ବିଦ୍ୟା, ଭୂତ ବିଦ୍ୟା, କ୍ଷତ୍ର ବିଦ୍ୟା, ନକ୍ଷତ୍ର ବିଦ୍ୟା ଏବଂ ସର୍ପ ଦେବଜନ ବିଦ୍ୟାମାନଙ୍କର ଅଧ୍ୟୟନ କରିଅଛି ।" ଏହି ବିଦ୍ୟାମାନଙ୍କର ବ୍ୟାଖ୍ୟା ଏହିପରି କରଯାଇପାରେ, 'ଇତିହାସ ପୁରାଣ' ବା ଆଧୁନିକ ଇତିହାସ, "ବେଦାନାଂବେଦ" ଅର୍ଥାତ୍ ବେଦର ଅର୍ଥ ଯେଉଁ ବିଦ୍ୟାମାନଙ୍କରୁ ଜଣାଯାଏ ଯେପରି ବ୍ୟାକରଣ ନିରୁକ୍ତ ଆଦି, 'ପୈତ୍ର୍ୟମ୍' ଅର୍ଥାତ୍ ପିତର ସମ୍ବନ୍ଧୀ ବିଦ୍ୟା ଯାହାକୁ 'ମନୁଷ୍ୟ ଶାସ୍ତ୍ର' (anthropology) କୁହାଯାଏ ; 'ରାଶିମ୍' ଅର୍ଥାତ୍ ଗଣିତ ବିଦ୍ୟା, ଉତ୍ପାତ ବିଦ୍ୟା ବା 'ଦୈବ ବିଦ୍ୟା' ଯେପରି ଭୂକମ୍ପ, ବାୟୁ କୋପ ଆଦି (Physical geography) 'ନିଧିମ୍' ଅର୍ଥାତ୍ ଖଣିବିଦ୍ୟା (mineralogy) 'ବାକୋବାକ୍ୟମ୍' ଅର୍ଥାତ୍ ତର୍କଶାସ୍ତ୍ର (Logic) 'ଏକାୟନମ୍' ଅର୍ଥାତ୍ ନୀତି ବିଦ୍ୟା (Ethics) 'ବ୍ରହ୍ମବିଦ୍ୟାମ୍' ଯହିଁରେ ବ୍ରହ୍ମର ବ୍ୟାଖ୍ୟା କରଯାଏ (Theosophy) 'ଭୂତ ବିଦ୍ୟାମ' ଅର୍ଥାତ୍ ପ୍ରାଣୀମାନଙ୍କ ପ୍ରକାର, ସେମାନଙ୍କର ବର୍ଣ୍ଣନ ଏବଂ ସେମାନଙ୍କ ରଚନା ଆଦିର ବିଦ୍ୟା (Zoology,Anatomy etc.) 'କ୍ଷତ୍ରବିଦ୍ୟାମ୍' ଅର୍ଥାତ୍ ଧନୁର୍ବିଦ୍ୟା ଏବଂ ରାଜ୍ୟ ଶାସନ ବିଦ୍ୟା (Science of archery and politics), 'ନକ୍ଷତ୍ର-ବିଦ୍ୟାମ୍' ଅର୍ଥାତ୍ ଜ୍ୟୋତିଷ (Astronomy and Astrology) 'ସର୍ପଦେବ ଜନବିଦ୍ୟା'ର ତାତ୍ପର୍ଯ୍ୟ ଠିକ୍ ଜଣାଯାଉ ନାହିଁ ପରନ୍ତୁ ସମ୍ଭବତଃ ଏଥିରେ ସର୍ପର ବିଷ ଦୂର କରିବାର ବିଦ୍ୟା ଏବଂ ଦେବ ଓ ଜନସହିତ ସମ୍ବନ୍ଧ ରଖଥିବା

ଅନେକ ପ୍ରକାରର ବିଦ୍ୟାମାନଙ୍କର ବର୍ଣ୍ଣନ ଅଛି, (Science of snakes and snake bite cure and spiritual sciences and sciences of human behaviour and psychology) । ସମ୍ଭବତଃ ଏହିସବୁ ବିଦ୍ୟାମାନଙ୍କର ପ୍ରଚଳିତ ବ୍ୟାଖ୍ୟାରେ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ମତଭେଦ ହୋଇପାରେ, କିନ୍ତୁ ଏହା ତ ସ୍ପଷ୍ଟ ଯେ ପ୍ରାଚୀନ ଭାରତରେ ନାନା ପ୍ରକାର ବିଦ୍ୟା ପଢ଼ାଯାଉଥିଲା । ସାଧାରଣତଃଯା ବ୍ରହ୍ମଚର୍ଯ୍ୟାଶ୍ରମ ଗୋଟିଏ ପ୍ରକାର ଅନିବାର୍ଯ୍ୟ ଶିକ୍ଷା କ୍ରମର ଉତ୍କୃଷ୍ଟ ନମୂନା ଅଟେ, ଯେପରି ଆଜିକାଲି ଅନିବାର୍ଯ୍ୟ ପ୍ରାଥମିକ ଶିକ୍ଷାର ଆୟୋଜନ କରଯାଇଅଛି । ଗୁରୁକୁଳ ଜୀବନରେ ମନୁଷ୍ୟ ପ୍ରକୃତ ଅର୍ଥରେ ମନୁଷ୍ୟ ହୋଇପାରୁଥିଲା । ତାଙ୍କରେ ଯେ ଯେଉଁ ପ୍ରକାର କାମ କରିବାକୁ ଚାହୁଁଥିଲା, ସେ ସେହି କାମ ବିଷୟରେ ଉପଯୁକ୍ତ ଜ୍ଞାନପ୍ରାପ୍ତ କରିପାରୁଥିଲା । ରାଜକୁମାରମାନଙ୍କୁ ରାଜଧର୍ମ ଧନୁର୍ବେଦ ଆଦି ବିଦ୍ୟା ଶିକ୍ଷା ଦିଆଯାଉଥିଲା ଏବଂ ବୈଶ୍ୟ ବା ଶିଳ୍ପକାରର ପୁତ୍ର ନିଜ ନିଜ ଧନ୍ଦା ବିଷୟକ ବ୍ୟାବହାରିକ ଜ୍ଞାନପ୍ରାପ୍ତି କରୁଥିଲା । ବିଭିନ୍ନ ଉଦ୍‌ଯୋଗ ଧନ୍ଦାମାନଙ୍କ ସହିତ ସମ୍ବନ୍ଧିତ ଯେଉଁ ସଂସ୍ଥାମାନ ଥିଲା, ସେମାନଙ୍କୁ ବିଭିନ୍ନ ବ୍ୟବସାୟମାନଙ୍କର ବ୍ୟବହାରିକ ଶିକ୍ଷା ଦେବାର ବ୍ୟବସ୍ଥା ରହିଥିଲା ।

## ଗୁରୁକୁଳ ଜୀବନର ବିଶେଷତା—

ଗୁରୁକୁଳ-ଜୀବନର ବିଶେଷତା ହେଉଛି ଯେ ତହିଁରେ ପଦେ ପଦେ ଉଦାର ଭାବ ଦୃଷ୍ଟିଗୋଚର ହେଉଥିଲା । ଗୁରୁକୁଳରେ ପ୍ରବେଶ କରିବା ମାତ୍ରେ ପ୍ରତ୍ୟେକ ବାଳକକୁ ଉଚ୍ଚ-ନୀଚ, ଛୋଟ-ବଡ଼ ଆଦି ଭାବ ଭୁଲିଯିବାକୁ ପଡ଼ୁଥିଲା ଏବଂ ବାଲ୍ୟ-କାଳରୁ ହିଁ ନିଜର କୋମଳ ହୃଦୟ ଉପରେ ସମତାର ଭାବ ଅଙ୍କିତ କରିବାକୁ ପଡ଼ୁଥିଲା । ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପରେ ସେ ଏହି ସମତା ଭାବକୁ ସମାଜରେ ଉପଯୋଗ କରୁଥିଲା, ଯଦ୍ୱାରା ସମାଜର ସମସ୍ତ ଅବ୍ୟବସ୍ଥା ଦୂରହେବା ସଙ୍ଗେ ସଙ୍ଗେ ହିତ ସାଧିତ ହୋଇପାରୁଥିଲା ।

ସେବା-ବୃତ୍ତି ମଧ୍ୟ ଗୁରୁକୁଳ ଜୀବନର ଗୋଟିଏ ବିଶେଷତା । ଗୁରୁକୁଳରେ ପ୍ରତ୍ୟେକ ବ୍ରହ୍ମଚାରୀକୁ ସ୍ୱାବଲମ୍ବନର ସିଦ୍ଧାନ୍ତ ଉପରେ ଆଚରଣ କରିବାକୁ ପଡ଼ୁଥିଲା, ଯଦ୍ୱାରା ତା'ର ଆତ୍ମବିଶ୍ୱାସ ବଢ଼ୁଥିଲା । ନିଜର ସବୁ କାମ ନିଜ ହାତରେ କରି ବ୍ରହ୍ମଚାରୀକୁ ଗୁରୁ-ସେବା ମଧ୍ୟ କରିବାକୁ ପଡ଼ୁଥିଲା । ଯଜ୍ଞ, ହବନ ଆଦିପାଇଁ ଜଙ୍ଗଲରୁ ସମିଧ ଆଣିବାକୁ ପଡ଼ୁଥିଲା ଏବଂ ନିକଟ ଗାଁକୁ ଯାଇ ଭିକ୍ଷା ମାଗିବାକୁ ପଡ଼ୁଥିଲା । ଭିକ୍ଷାଚରଣଦ୍ୱାରା ବ୍ରହ୍ମଚାରୀର ହୃଦୟ

ଉପରେ ନମ୍ରତା ଏବଂ ବିନୟଶୀଳତାର ଭାବ ଅଙ୍କିତ ହେଉଥିଲା । ବ୍ରହ୍ମଚାରୀକୁ ସରଳ ଜୀବନ ଯାପନ କରିବାକୁ ପଡ଼ୁଥିଲା ଏବଂ ଇନ୍ଦ୍ରିୟଲୋଲୁପତାକୁ ଉତ୍ତେଜିତ କରୁଥିବା ଚକ୍‌ମକ୍ ବେଶ ଭୂଷା, ତେଲ ମର୍ଦ୍ଦନ ଆଦି ଶୃଙ୍ଗାର ସାମଗ୍ରୀଠାରୁ ଦୂରରେ ରହିବାକୁ ପଡ଼ୁଥିଲା ।

## ଗୁରୁକୁଳ ଜୀବନରୁ ଲାଭ —

ଗୁରୁକୁଳ ଜୀବନକୁ ଏପରି ବ୍ୟବସ୍ଥିତ କରାଯାଇଥିଲା ଯେ ତଦ୍ୱାରା ପ୍ରତ୍ୟେକ ବିଦ୍ୟାର୍ଥୀକୁ ନିଜର ଶାରୀରିକ, ମାନସିକ ତଥା ଆଧ୍ୟାତ୍ମିକ ଉନ୍ନତି କରିବାପାଇଁ ପୂରାପୂରି ସୁଯୋଗ ମିଳୁଥିଲା । ଶୁଦ୍ଧ ବାତାବରଣ, ନିୟମ ବଦ୍ଧତା ଆଦି ଯୋଗୁ ଶରୀର ପୁଷ୍ଟ ରହି ଉତ୍ତମ ସ୍ୱାସ୍ଥ୍ୟ ପ୍ରାପ୍ତ ହେଉଥିଲା । ଜଙ୍ଗଲର ଶୁଦ୍ଧ ବାୟୁରେ ରହିବା, ବ୍ରାହ୍ମମୁହୂର୍ତ୍ତରେ ଉଠିବା, ଶୌଚାଦି ପରେ ସ୍ନାନ, ସନ୍ଧ୍ୟାଦି କରିବା ଏପରି ଜୀବନ କ୍ରମ ଶରୀରକୁ ପୁଷ୍ଟ କରିବାପାଇଁ ସମର୍ଥ ଥିଲା । ଇନ୍ଦ୍ରିୟ ନିଗ୍ରହ, ବ୍ୟସନମାନଙ୍କଠାରୁ ଦୂରରେ ରହିବା, ଜୀବନକୁ ସାଧାସିଧା ରଖିବା ଆଦି ବିଷୟମାନ ବ୍ରହ୍ମଚାରୀର ନୈତିକ ଓ ଆଧ୍ୟାତ୍ମିକ ଉନ୍ନତି କରିବାରେ ସମର୍ଥ ଥିଲା । ଅତି କମରେ ପନ୍ଦର ବର୍ଷ ପର୍ଯ୍ୟନ୍ତ ଏହିପରି ଜୀବନ ବ୍ୟତୀତ କରିବା ପରେ ଶରୀର ଏତେ ହୃଷ୍ଟ ପୁଷ୍ଟ ହେଉଥିଲା ଯେ କୌଣସି ରୋଗ ଶରୀରରେ ପ୍ରବେଶ କରିପାରୁ ନ ଥିଲା । ଏତାଦୃଶ ଶାରୀରିକ ବିକାଶ ହେତୁ "ପଶ୍ୟେମ ଶରଦଃ ଶତମ୍, ଜୀବେମ ଶରଦଃ ଶତମ୍" ଆଦିର ବୈଦିକ ଆଦର୍ଶ ଚରିତାର୍ଥ କରାଯାଇ ପାରୁଥିଲା । ଶାରୀରିକ ବିକାଶସହିତ ମାନସିକ ଏବଂ ଆତ୍ମିକ ବିକାଶ ମଧ୍ୟ ବରାବର ହେଉଥିଲା । ଏହି କାର୍ଯ୍ୟରେ ଗୁରୁଙ୍କ ବ୍ୟକ୍ତିତ୍ୱର ବଳିଷ୍ଠ ପ୍ରଭାବ ପଡ଼ୁଥିଲା । ବେଦାଦିର ଅଧ୍ୟୟନ ଏବଂ ଅନ୍ୟ ବିଦ୍ୟାମାନଙ୍କର ଜ୍ଞାନଦ୍ୱାରା ମନ ଓ ବୁଦ୍ଧିର ବିକାଶ ହେଉଥିଲା । ଆଚାର୍ଯ୍ୟଙ୍କ ସଚ୍ଚରିତ୍ରତା ଏବଂ ପବିତ୍ର ଜୀବନଦ୍ୱାରା ଆତ୍ମିକ ବିକାଶପାଇଁ ପ୍ରେରଣା ମିଳୁଥିଲା ।

ଏହି ପ୍ରକାର ବିଭିନ୍ନ ଶକ୍ତିମାନଙ୍କର ବିକାଶରେ ଅଗ୍ରସର ହୋଇ ବିଦ୍ୟାର୍ଥୀ ଯେବେ ଗୁରୁକୁଳରୁ ପ୍ରତ୍ୟାବର୍ତ୍ତନ କରି ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିଲା, ସେତେବେଳେ ସେ ସବୁ ସିଦ୍ଧାନ୍ତମାନଙ୍କର ଆଦର୍ଶ ଅନୁସାରେ ନିଜର ଗୃହସ୍ଥାଶ୍ରମ ଜୀବନ ବ୍ୟତୀତ କରୁଥିଲା, ଯେଉଁସବୁ ସିଦ୍ଧାନ୍ତମାନଙ୍କର ଆଦର୍ଶ ସେ ଗୁରୁକୁଳରେ ଶିକ୍ଷା କରିଥିଲା । ଗୁରୁଙ୍କଠାରେ ଧୀରେ ଧୀରେ ସେ ଶକ୍ତି ଆସିଯାଉଥିଲା, ଯଦ୍ୱାରା ସେ ସାଂସାରିକ ଜଞ୍ଜାଳର ମୋହ ମାୟା ଫାନ୍ଦରେ ନ ପଡ଼ି ଜୀବନର

ସମସ୍ୟାମାନଙ୍କୁ ସଫଳତାରସହିତ ସମାଧାନ କରିବାରେ ଲାଗି ଯାଉଥିଲା ଏବଂ ବର୍ଗ-ଚତୁଷ୍ଟୟ ପ୍ରାପ୍ତିରେ ପ୍ରଯତ୍ନଶୀଳ ହେଉଥିଲା । ତାକୁ 'ଦ୍ୱିଜ' (ଦୁଇ ଜନ୍ମ ବାଲା ବ୍ୟକ୍ତି) କୁହାଯିବାର ଅଧିକାର ପ୍ରାପ୍ତ ହେଉଥିଲା । ଧର୍ମ ଶାସ୍ତ୍ରମାନଙ୍କରେ ଏହି ଦୁଇ ଜନ୍ମର ବିବରଣ ଏହି ପ୍ରକାରେ ଦିଆଯାଇଛି—ଏକ ଜନ୍ମ ମାତାଙ୍କ ଗର୍ଭରୁ ଏବଂ ଦ୍ୱିତୀୟ ଜନ୍ମ ଗାୟତ୍ରୀର ଗର୍ଭରୁ । ଏହାର ତାତ୍ପର୍ଯ୍ୟ ହେଲା ଯେ ମାତାଙ୍କ ଗର୍ଭରୁ ଉତ୍ପନ୍ନ ହେବା ପରେ ମଧ୍ୟ ଶିକ୍ଷା, ଜ୍ଞାନୋପାର୍ଜନଦ୍ୱାରା ମନୁଷ୍ୟଠାରେ ଏତେ ପରିବର୍ତ୍ତନ ହୋଇଯାଏ ଯେ ସେ ଏକାବେଳକେ ଦ୍ୱିତୀୟ ମନୁଷ୍ୟ ରୂପ ଧାରଣ କରେ । ଏହା ହିଁ ହେଉଛି ତାହାର ଦ୍ୱିତୀୟ ଜନ୍ମ ।

**କେତେକ ପ୍ରାଚୀନ ଗୁରୁକୁଳ (ବିଶ୍ୱବିଦ୍ୟାଳୟ)**—ପ୍ରାଚୀନ ଭାରତରେ ସମାଜର ବାଳକମାନଙ୍କୁ ଶିକ୍ଷା ପ୍ରଦାନ କରିବାପାଇଁ ସ୍ଥାନେ ସ୍ଥାନେ ଗୁରୁକୁଳ ପ୍ରତିଷ୍ଠା କରାଯାଇଥିଲା । ବେଦ, ପୁରାଣ, ରାମାୟଣ, ମହାଭାରତ ଏବଂ ସଂସ୍କୃତ-ସାହିତ୍ୟର ଅନ୍ୟ ଗ୍ରନ୍ଥମାନଙ୍କରେ ଗୁରୁକୁଳମାନଙ୍କର ଅସ୍ତିତ୍ୱର ଉଲ୍ଲେଖ ବହୁବାର କରା ଯାଇଅଛି । କିନ୍ତୁ ଗୁରୁକୁଳମାନଙ୍କ ବିଷୟରେ ବିସ୍ତୃତ ଜ୍ଞାନ ବୌଦ୍ଧକାଳୀନ ସାହିତ୍ୟରୁ ପ୍ରାପ୍ତ ହୁଏ । ସେତେବେଳକୁ ଏହି ଗୁରୁକୁଳଗୁଡ଼ିକ ବିଶ୍ୱବିଦ୍ୟାଳୟର ସ୍ୱରୂପ ଧାରଣ କରି ସାରିଥିଲା । ସେ ସବୁରେ ବହୁ ବିଦ୍ୟାର୍ଥୀ ପଢ଼ୁଥିଲେ ଏବଂ ନାନା ପ୍ରକାରର ବିଦ୍ୟା ପଢ଼ାଯାଉଥିଲା । ବିଦେଶମାନଙ୍କରୁ ମଧ୍ୟ ବ୍ୟକ୍ତିମାନେ ଆସି ଏହି ସବୁ ସ୍ଥାନରେ ଜ୍ଞାନ ଉପାର୍ଜନ କରୁଥିଲେ । ଏହି ପ୍ରକାରେ ମନୁଙ୍କ ବଚନ (ମନୁ:୨।୨୦) "ଭାରତରେ ଉତ୍ପନ୍ନ ବିଦ୍ୱାନ ବ୍ରାହ୍ମଣମାନଙ୍କଠାରୁ ପୃଥିବୀର ସବୁ ମନୁଷ୍ୟ ନିଜ ନିଜ ଚରିତ୍ରର ପାଠ ଶିଖନ୍ତୁ" ପୂର୍ଣ୍ଣତଃ ଚରିତାର୍ଥ ହୋଇଥିଲା । ବୌଦ୍ଧକାଳର କେତେକ ଗୁରୁକୁଳମାନଙ୍କ ସମ୍ବନ୍ଧରେ, ଯାହାକୁ ବିଶ୍ୱବିଦ୍ୟାଳୟ କୁହାଯିବା ଉଚିତ, ଇତିହାସ ସାହାଯ୍ୟରେ ବହୁତ କିଛି ତଥ୍ୟ ଜଣାପଡ଼େ । ସେ ସବୁ ବିଶ୍ୱବିଦ୍ୟାଳୟ ତକ୍ଷଶିଳା, ନାଳନ୍ଦା, ବିକ୍ରମଶିଳା ଆଦି ସ୍ଥାନମାନଙ୍କରେ ଏବଂ ଓଡ଼ିଶାର କେତେକ ବୌଦ୍ଧ ବିହାରରେ ସ୍ଥାପିତ ହୋଇଥିଲା ।

**ତକ୍ଷଶିଳା**—ତକ୍ଷଶିଳାରେ ଖ୍ରୀଷ୍ଟପୂର୍ବ ୬୦୦ ଶତାବ୍ଦୀ ପାଖାପାଖି ଗୋଟିଏ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଥିଲା । ଏହି ନଗର ଭାରତର ପଶ୍ଚିମ ଉତ୍ତରଭାଗରେ ଗାନ୍ଧାର ଦେଶର ରାଜଧାନୀ ଥିଲା । ବ୍ରାହ୍ମଣୀୟ ଶିକ୍ଷାର ଏହା ଏକ ମହତ୍ତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା । ସବୁ ଜାତି ଏବଂ ସ୍ଥାନର ବିଦ୍ୟାର୍ଥୀ ଏଠାରେ ନାନା ପ୍ରକାର ବିଦ୍ୟାର ଅଧ୍ୟୟନ କରିବାପାଇଁ ଆସୁଥିଲେ । ଏଠାରେ ବେଦ, ଅଷ୍ଟାଦଶ ବିଦ୍ୟା, ଶିଳ୍ପ ଇତ୍ୟାଦି

ଶିଖାଯାଉଥିଲା । ଏହି ବିଶ୍ୱ ବିଦ୍ୟାଳୟରେ ମହାନ୍ ବୈୟାକରଣିକ ପାଣିନି, ସୁପ୍ରସିଦ୍ଧ ବୈଦ୍ୟ ଜୀବକ, ଅର୍ଥଶାସ୍ତ୍ର ପ୍ରଣେତା ବିଷ୍ଣୁଗୁପ୍ତ, ଚାଣକ୍ୟ ଏବଂ ମୌର୍ଯ୍ୟ ସମ୍ରାଜ୍ୟର ସଂସ୍ଥାପକ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଆଦି ପ୍ରସିଦ୍ଧ ବ୍ୟକ୍ତିମାନେ ଶିକ୍ଷା ପ୍ରାପ୍ତ କରିଥିଲେ । ଗୌତମ ବୁଦ୍ଧଙ୍କ ସମକାଳୀନ ତକ୍ଷଶିଳା ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟ ଆତ୍ରେୟ ଆୟୁର୍ବେଦ ଜ୍ଞାନପାଇଁ ପ୍ରସିଦ୍ଧ ଥିଲେ । ଗୌତମ ବୁଦ୍ଧଙ୍କ ବୈଦ୍ୟ ଜୀବକ ଦୀର୍ଘ ସାତ ବର୍ଷ ପର୍ଯ୍ୟନ୍ତ ଆଚାର୍ଯ୍ୟ ଆତ୍ରେୟଙ୍କ ଚରଣରେ ଆୟୁର୍ବେଦ ଅଧ୍ୟୟନ କରିଥିଲେ । ପରୀକ୍ଷାରେ ଜୀବକଙ୍କୁ ପଚରାଗଲା ଯେ ତକ୍ଷଶିଳାର ପନ୍ଦର ମାଇଲ ଘେର ଭିତରେ ଯେତେ ବନସ୍ପତି, ବୃକ୍ଷ, ଲତା, ଘାସ, ଚେରମୂଳ ଆଦି ଅଛି ସେ ସବୁର ବୈଦ୍ୟକ ଦୃଷ୍ଟିରୁ କି ଉପଯୋଗ ହୋଇପାରିବ ? ଏ ସମ୍ବନ୍ଧରେ ଜୀବକ ଚାରି ଦିନ ପର୍ଯ୍ୟନ୍ତ ଅନୁସନ୍ଧାନ କରିସାରିଲେଉଟି ଆସି ଆଚାର୍ଯ୍ୟ ଆତ୍ରେୟଙ୍କୁ କହିଥିଲେ ଯେ "କୌଣସି ଗୋଟିଏ ମଧ୍ୟ ଏପରି ବନସ୍ପତି ନାହିଁ, ଯହିଁରେ କୌଣସି ନା କୌଣସି ବୈଦିକ ଗୁଣ ନାହିଁ ।" ବୌଦ୍ଧ ଜାତକମାନଙ୍କରୁ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ବିଷୟରେ ବହୁ ବିଷୟ ଜଣାପଡ଼େ ।

ଏହି ବିଶ୍ୱବିଦ୍ୟାଳୟରେ ୟୁନାନୀ (Greek) ଏବଂ ଭାରତୀୟ ଦାର୍ଶନିକମାନେ ପରସ୍ପର ସଂସର୍ଗରେ ଆସୁଥିଲେ ଏବଂ ପରସ୍ପରର ସିଦ୍ଧାନ୍ତମାନଙ୍କୁ ଗ୍ରହଣ କରୁଥିଲେ । ବାବୁଲର (Babylen) ନିବାସୀ ଭାରତ-ଯାତ୍ରାପାଇଁ ସ୍ଥଳ ମାର୍ଗରେ ତକ୍ଷଶିଳାକୁ ଆସୁଥିଲେ । ଏରିୟନ (Arrian) ,ଷ୍ଟ୍ରାବୋ (Strabo) ,ଟୋଲେମୀ (ptolemy), ଡାୟୋନିସିୟସ(Dionysius), ପ୍ଲିନୀ(Pliny),ଫାହିଆନ(Fahien), ୟୁଏନ-ତ୍ସେଙ୍ଗ(Hien-en-Tsang) ଏବଂ ଅନ୍ୟ ବିଦେଶୀ ଯାତ୍ରୀମାନେ ତକ୍ଷଶିଳାକୁ ଏକ ପ୍ରାଚୀନ ତଥା ମହତ୍ତ୍ୱପୂର୍ଣ୍ଣ ବିଦ୍ୟା କେନ୍ଦ୍ର ବୋଲି ଘୋଷଣା କରିଛନ୍ତି ।

ଭାରତର ପ୍ରାଚୀନତମ ଶିକ୍ଷଣ ସଂସ୍ଥା (ତକ୍ଷଶିଳା ବିଶ୍ୱବିଦ୍ୟାଳୟ) ପଞ୍ଜାବ ପ୍ରାନ୍ତର ରାବଲପିଣ୍ଡି ସହରଠାରୁ ପ୍ରାୟ ୧୮ ମାଇଲ ଦୂରବର୍ତ୍ତୀ ତକ୍ଷଶିଳା ନାମକ ନଗରୀରେ ଅବସ୍ଥିତ ଥିଲା । ପୂର୍ବକାଳୀନ ତକ୍ଷଶିଳା ବର୍ତ୍ତମାନ ନିର୍ଜନ ଓ ପରିତ୍ୟକ୍ତ ସ୍ଥାନ ହୋଇଯାଇଛି । ଚୀନ ଭାଷାରେ ତକ୍ଷର ଅର୍ଥ ହେଲା ପାହାଡ଼ ଏବଂ ତକ୍ଷଶିଳା ବାସ୍ତବିକ ପାହାଡ଼ ମଝିରେ ଅବସ୍ଥିତ ଥିଲା । ଐତିହାସିକମାନଙ୍କ କଥନ ହେଲା ଯେ "ରାମାୟଣପ୍ରସିଦ୍ଧ ଭରତଙ୍କ ଦୁଇପୁତ୍ର ଥିଲେ—ତକ୍ଷ ଏବଂ ପୁଷ୍କର । ପୁଷ୍କର ପୁଷ୍କରାବର୍ତ୍ତ ନଗର ଏବଂ ତକ୍ଷ ତକ୍ଷଶିଳା ନଗର ବସାଇଥିଲେ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠାରୁ ଆରମ୍ଭ କରି ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ତକ୍ଷଶିଳାବହୁତ ଉନ୍ନତିଶୀଳ ଥିଲା । ଏହାପରେ ହୂଣ ଆକ୍ରମଣକାରୀମାନେ ତକ୍ଷଶିଳାର ସର୍ବନାଶ

କରିଦେଇଥିଲେ । ପ୍ରାୟ ଅଢ଼ାଇ ହଜାର ବର୍ଷ ପରେ ବୈଜ୍ଞାନିକମାନଙ୍କ କଠିନ ଅନୁସନ୍ଧାନକ୍ରମେ ତକ୍ଷଶିଳା ନଗରର ଖୋଦନ କାର୍ଯ୍ୟ କରାଯାଇଥିଲା । ତା' ଫଳରେ ତତ୍କାଳୀନ ହାଣ୍ଡି–ମାଠିଆ (ତନ୍ମଧ୍ୟରେ ଛୋଟ ଛୋଟ ବାସନଠାରୁ ଆରମ୍ଭ କରି ଗ୍ରରି ଗ୍ରରି ଫୁଟ ଉଚ୍ଚତା ବିଶିଷ୍ଟ ମାଠିଆମାନ ମିଳିଛି । କଲମ, ଦୁଆତ, ଥାଳି, ତାଳ, ହୀରକ ହାର, ପ୍ରକାଶ ସ୍ତମ୍ଭ, କଷଟି ପଥର ଏବଂ କଜ୍ଜଳଦାନୀମାନ ପ୍ରାପ୍ତ ହୋଇଅଛି ଏବଂ ଗାନ୍ଧାର କଳାର ସର୍ବୋତ୍କୃଷ୍ଟ ନମୁନା ଓ ବୌଦ୍ଧ ଭିକ୍ଷୁମାନଙ୍କର ଅବଶିଷ୍ଟ ସାମାନ(furniture) ମଧ୍ୟ ମିଳିଛି । ଏହା ବ୍ୟତୀତ 'ବ୍ରାହ୍ମୀ' ଏବଂ 'ଖରୋଷ୍ଟୀ' ଲିପିମାନଙ୍କରେ ଲିଖିତ ଶିଳାଲେଖ ମଧ୍ୟ ମିଳିଛି । ଏସବୁ ସେଠାର 'ମ୍ୟୁଜିୟମ' (museum)ରେ ରକ୍ଷିତ ହୋଇଅଛି ।"

ନାଲନ୍ଦା ବିଶ୍ୱବିଦ୍ୟାଳୟ:—

ତକ୍ଷଶିଳା ପରେ ରହିଛି ନାଲନ୍ଦା-ବିଶ୍ୱବିଦ୍ୟାଳୟର ସ୍ଥାନ । ବାସ୍ତବିକ ଏହା ସମଗ୍ର ସଂସାରର ଜ୍ଞାନପୀଠ ଥିଲା । ନାଲନ୍ଦା ବିଶ୍ୱବିଦ୍ୟାଳୟ ତତ୍କାଳୀନ ଜଗତକୁ ଭାରତୀୟ ଜ୍ଞାନ, ବିଜ୍ଞାନ, ଧର୍ମଶାସ୍ତ୍ର, ସାହିତ୍ୟ, ଦର୍ଶନ, କଳା, ଶିଳ୍ପ, ସଭ୍ୟତା ଏବଂ ସଂସ୍କୃତି ଆଦିର ଦାନ ଦେଇଥିଲା । ଯେତେବେଳେ ବୌଦ୍ଧଧର୍ମର ବିଜୟ-ପତାକା ସାରା ଏସିଆମଣ୍ଡଳରେ ଉଡ଼ୁଥିଲା, ସେତେବେଳେ ନାଲନ୍ଦା ହିଁ ଥିଲା ଭାରତୀୟ ଜ୍ଞାନ ବିଜ୍ଞାନର ମୂଳସ୍ରୋତ । ନାଲନ୍ଦାରେ ଅଧ୍ୟୟନ ନ କଲେ ଶିକ୍ଷା ଅସମ୍ପୂର୍ଣ୍ଣ ବୋଲି ଧରାଯାଉଥିଲା ।

ନାଲନ୍ଦାର ସ୍ଥିତି ବିଷୟରେ ଇତିହାସକାରମାନେ ବିଭିନ୍ନ ମତ ଦିଅନ୍ତି । 'ପାଲି-ସାହିତ୍ୟ'ରେ ନାଲନ୍ଦା ରାଜଗୃହଠାରୁ ଆଠ ମାଇଲ ଦୂରରେ ଅବସ୍ଥିତ ଥିବା କୁହାଯାଇଅଛି । ଚୀନୀ ଯାତ୍ରୀ 'ଫାହିୟାନ'ଙ୍କର ମଧ୍ୟ ଏହି ମତ । ଅନ୍ୟ ଚୀନୀ ଯାତ୍ରୀ ହ୍ୱାନଥ୍ସାଙ୍ଗ୍‌ଙ୍କ କଥନ ଅନୁସାରେ ନାଲନ୍ଦା ବର୍ତ୍ତମାନର ବିହାର ସରୀଫ ସହରର ଦକ୍ଷିଣ ପଶ୍ଚିମ କୋଣରେ ଏକ ଆମ୍ବ ବଗିଚା ଥିଲା । ସେ ବଗିଚାରେ 'ନାଲନ୍ଦା' ନାମକ ଏକ ନାଗରାଜ ରହୁଥିଲେ । ଏହା ମଧ୍ୟ କୁହାଯାଏ ଯେ ଭଗବାନ୍ ବୁଦ୍ଧ ପୂର୍ବ ଜନ୍ମରେ ଏଠାରେ 'ବୋଧିସତ୍ତ୍ୱ'ରୂପରେ ଜାତ ହୋଇ-ଥିଲେ । ଖୋଦିତ ହୋଇଥିବା ନାଲନ୍ଦାର ଭଗ୍ନାବଶେଷ 'ବକ୍ତିଆରପୁର ବିହାର ଲାଇଟ୍ ରେଲଓ୍ୱେର' 'ନାଲନ୍ଦା' ଷ୍ଟେସନ୍‌ରୁ ପ୍ରାୟ ଏକ ମାଇଲ ଦୂରବର୍ତ୍ତୀ । ଖୋଦନରେ ଆର୍ଯ୍ୟ ନାଗାର୍ଜ୍ଜୁନଙ୍କ ଏକ ମୂର୍ତ୍ତି ମିଳିଛି । ଯଦି ଏହି ପ୍ରତିମା ଶୂନ୍ୟବାଦୀ ନାଗାର୍ଜ୍ଜୁନଙ୍କର ମାନି ନିଆଯାଏ, ତେବେ ତହିଁରୁ ଏହା ସିଦ୍ଧ ହେବ ଯେ ନାଲନ୍ଦା

ଦ୍ୱିତୀୟ ଶତାବ୍ଦୀମଧ୍ୟରେ ଗୋଟିଏ ସୁପ୍ରତିଷ୍ଠିତ ଶିକ୍ଷା ଦାନ କେନ୍ଦ୍ର ଥିଲା । କାରଣ ନାଗାର୍ଜୁନ ମହାଯାନର ପ୍ରବର୍ତ୍ତକ ଥିଲେ ଏବଂ ନାଲନ୍ଦା ଥିଲା ମହାଯାନୀମାନଙ୍କର ଦୁର୍ଗ । ଯେଉଁଠି ପୂର୍ବେ ନାଲନ୍ଦା ବିଦ୍ୟାପୀଠର ସୁନ୍ଦର ସୁଦୃଢ଼ ଭବନ ରହିଥିଲା, ସେଠାରେ ଏବେ ବଡ଼ଗାଁ ନାମକ ଗୋଟିଏ ବସ୍ତି ଅଛି । ତା' ନିକଟସ୍ଥ ବିସ୍ତୃତ ଏବଂ ସୁଦୂର ପ୍ରସାରୀ ଅଞ୍ଚଳରେ ନାଲନ୍ଦାର ଧ୍ୱଂସାବଶେଷରୂପେ ଉଚ୍ଚ ଭଗ୍ନ ଭଙ୍ଗା କାନ୍ଥ, ଅଗଣିତ ଭଙ୍ଗା ଇଟା, ବହୁ ପ୍ରାଚୀନ ପୁଷ୍କରିଣୀଆଦି ନାଲନ୍ଦାର ପ୍ରାଚୀନତମ ଗୌରବମୟ ଦିନମାନଙ୍କର ମହତ୍ତ୍ୱର ସାକ୍ଷୀରୂପେ ଦଣ୍ଡାୟମାନ ।

ନାଲନ୍ଦା ବିଶ୍ୱବିଦ୍ୟାଳୟକୁ ସୁଦୂରବର୍ତ୍ତୀ ଚୀନ, ଜାପାନ, ତାତାର, ମଧ୍ୟଏସିଆ, ତିବ୍ବତ, ଶ୍ୟାମ, ଅନାମ, ବର୍ମା, ମାଳୟ ଆଦି ଅନେକ ଦେଶମାନଙ୍କରୁ ଜ୍ଞାନ-ପିପାସୁ ବ୍ୟକ୍ତି ଅଧ୍ୟୟନପାଇଁ ଆସୁଥିଲେ । ଏଠାରେ ଅଷ୍ଟାଦଶ ବୌଦ୍ଧ-ନିକାୟ-ଗ୍ରନ୍ଥମାନଙ୍କ ବ୍ୟତୀତ ବୈଦ୍ୟଶାସ୍ତ୍ର, ଦର୍ଶନ, ସାହିତ୍ୟ, କଳା, ବ୍ରାହ୍ମଣ ଏବଂ ଜୈନ ଦର୍ଶନ ଆଦିର ମଧ୍ୟ ଶିକ୍ଷା ଦିଆଯାଉଥିଲା । ଭଗ୍ନାବଶେଷର ଖୋଦନରୁ ମିଳିଥିବା ଜିନିଷମାନ ସୂଚାଇ ଦିଏ ଯେ ଏଠାରେ କେବଳ ପୁସ୍ତକ-ଶିକ୍ଷା ହିଁ ପର୍ଯ୍ୟାପ୍ତ ନ ଥିଲା; ହସ୍ତ-କୌଶଳର ଶିକ୍ଷାପାଇଁ ମଧ୍ୟ ସୁପ୍ରବନ୍ଧ ରହିଥିଲା ।

ଏଠାରେ ଚୀନ୍ ସ୍ନାତକ ହ୍ୱେନସାଙ୍ଗଙ୍କ ଅନୁସାରେ ନାଲନ୍ଦାରେ ଦଶ ହଜାରରୁ ଅଧିକ ଛାତ୍ର ପଢ଼ୁଥିଲେ ଏବଂ ଅଧ୍ୟାପକଙ୍କ ସଂଖ୍ୟା ଦେଢ଼ ହଜାର ଥିଲା । ପ୍ରଧାନାଧ୍ୟାପକ ଥିଲେ ଶୀଲଭଦ୍ର । ବିଶ୍ୱବିଦ୍ୟାଳୟସହିତ ବିହାରରେ ଆଠଟି ବିସ୍ତୃତ କକ୍ଷ ଏବଂ ତିନି ଶହ ପ୍ରକୋଷ୍ଠ ଥିଲା । ସଭା-ସଦନ ଦଶଭାଗରେ ବିଭକ୍ତ ଥିଲା । ଶିକ୍ଷାର୍ଥୀମାନଙ୍କ ରହିବାପାଇଁ ଭିନ୍ନ ଭିନ୍ନ ତିନି ଶହ ଛାତ୍ରାବାସ-ଭବନ ଥିଲା । ତିନୋଟି ବିଶାଳ ପୁସ୍ତକାଳୟ ଥିଲା । ଯାହାର ନାମ ଥିଲା ରତ୍ନସାଗର, ରତ୍ନୋଦଧି ଏବଂ ରତ୍ନରଞ୍ଜକ । ଏହିସବୁ ପୁସ୍ତକାଳୟରେ ହୀନଯାନ, ମହାଯାନ, ବଜ୍ରଯାନ ଆଦି ବୌଦ୍ଧ ତଥା ଅନ୍ୟାନ୍ୟ ସମ୍ପ୍ରଦାୟମାନଙ୍କ ବିବିଧ ବିଷୟକ ଗ୍ରନ୍ଥମାଳା ସଞ୍ଚିତ ରହିଥିଲା ।

ଶିକ୍ଷା ବିଭାଗରେ ଜିନମିତ୍ର, ଶାନ୍ତିବୁଦ୍ଧ, ଚନ୍ଦ୍ରପାଳ, ଜ୍ଞାନଚନ୍ଦ୍ର, ସ୍ଥିରମତି; ପ୍ରଭାକର ମିତ୍ର, ଧର୍ମପାଳ, ଭଦ୍ରସେନ, ଶାନ୍ତରକ୍ଷିତ ଆଦି ପ୍ରଥମ ଶ୍ରେଣୀର ପ୍ରକାଣ୍ଡ ବିଦ୍ୱାନ୍ ଥିଲେ । ଯନ୍ମଧ୍ୟରେ ଆଚାର୍ଯ୍ୟ ଶାନ୍ତିରକ୍ଷିତଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ମନେହୁଏ । ତାଙ୍କ ସମୟରେ ନାଲନ୍ଦାର କୀର୍ତ୍ତି ଅ... ବିଶ୍ୱରେ ପରିବ୍ୟାପ୍ତ ହେବା ସମ୍ଭବ ହୋଇପାରିଥିଲା ।

ନାଲନ୍ଦା କେବଳ ମଗଧର ହିଁ ଜ୍ଞାନଭଣ୍ଡାର ନ ଥିଲା, ବରଂ ସମସ୍ତ ସଂସାରରେ ଜ୍ଞାନ ବିଜ୍ଞାନର ପଥପ୍ରଦର୍ଶକ ଥିଲା । ନାଲନ୍ଦାର ଅନ୍ତିମ ଦିନମାନଙ୍କରେ ଘୋର ବଜ୍ରଯାନର ବିକୃତରୂପ ଜନତାମଧ୍ୟରେ ପ୍ରଚାରିତ କରାଯାଉଥିଲା । ଏହି ସବୁ ଆନ୍ତରିକ ଦୁର୍ବଳତାବେଳେ ମୁସଲମାନ ଆକ୍ରମଣ ନାଲନ୍ଦାକୁ ଧୂଳିସାତ୍ କରି ଦେଇଥିଲା । ଭାରତୀୟ ସ୍ଥାପତ୍ୟ କଳାର ସେହି ଉତ୍କୃଷ୍ଟ ନମୁନାମାନ ସେତିକିବେଳେ ଭସ୍ମସାତ୍ ହୋଇଯାଇଥିଲା ।

**ବିକ୍ରମଶିଳା ବିଶ୍ୱବିଦ୍ୟାଳୟ** –

ପ୍ରାଚୀନ ଭାରତର ତୃତୀୟ ବିଶ୍ୱବିଦ୍ୟାଳୟ ବିକ୍ରମଶିଳାର ଅବସ୍ଥିତି ବିଷୟରେ ଇତିହାସକାରମାନଙ୍କର ବିଭିନ୍ନ ମତ ଥାଇ ମଧ୍ୟ ବହୁ ତିବ୍ବତୀ ବୌଦ୍ଧ ଗ୍ରନ୍ଥମାନଙ୍କ ଅନୁବାଦ ପରେ, ଏହାର ଆଧାର ଉପରେ ବର୍ତ୍ତମାନ ଭାଗଲପୁର ଜିଲ୍ଲାର ସୁଲତାନଗଞ୍ଜକୁ 'ବିକ୍ରମଶିଳା' ନିଶ୍ଚିତ କରାଯାଇଅଛି ।

ଏହି ବିଶ୍ୱବିଦ୍ୟାଳୟର ଚାରି ଦିଗରେ ଚାରୋଟି ତୋରଣ ଥିଲା । ପ୍ରତ୍ୟେକ ପ୍ରବେଶ ଦ୍ୱାରରେ ଏକ-ଏକ ପ୍ରବେଶିକା ପରୀକ୍ଷା ଗୃହ ଥିଲା । ସେହି ଦ୍ୱାରମାନଙ୍କରେ ଜଣେ ଜଣେ ଦିଗ୍‌ଗଜ ବିଦ୍ୱାନ୍ ରହୁଥିଲେ । ଯେଉଁ ପ୍ରବେଶାର୍ଥୀ ସେଠାକୁ ପଢ଼ିବାକୁ ଆସୁଥିଲେ ତାଙ୍କୁ ପ୍ରଥମେ ଦ୍ୱାରସ୍ଥ ପଣ୍ଡିତମାନଙ୍କୁ ପରୀକ୍ଷାରେ ସନ୍ତୁଷ୍ଟ କରିବାକୁ ପଡ଼ୁଥିଲା ।

ଅଧ୍ୟାପନ ବିଭାଗରେ ରତ୍ନବଜ୍ର, ଲୀଳାବଜ୍ର, କୃଷ୍ଣସମରବଜ୍ର, ତଥାଗତ ରକ୍ଷିତ, ଦୀପଙ୍କର ଶ୍ରୀଜ୍ଞାନ, ବୋଧିଭଦ୍ର, କମଳରକ୍ଷିତ ଏବଂ ନରେନ୍ଦ୍ର ଶ୍ରୀଜ୍ଞାନ– ଏହି ଆଠ ଜଣ ମହାପଣ୍ଡିତ ଏବଂ ୧୦୮ ପଣ୍ଡିତ ଥିଲେ । ଆଚାର୍ଯ୍ୟ ଦାୟିତ୍ୱରେ ଥିଲେ 'ଦୀପଙ୍କର ଶ୍ରୀଜ୍ଞାନ' ଏଠାରେ ଧର୍ମ, ସାହିତ୍ୟ, ଦର୍ଶନ, ନ୍ୟାୟ ଆଦି ବ୍ୟତୀତ ବିଶେଷରୂପରେ ମନ୍ତ୍ରଶାସ୍ତ୍ରର ଶିକ୍ଷା ଦିଆଯାଉଥିଲା । ନାଲନ୍ଦା ପରି ପ୍ରାଚୀନ ତଥା ବିକ୍ରମଶିଳା ପରି ନବୀନ ବିଶ୍ୱବିଦ୍ୟାଳୟମାନଙ୍କରେ ତନ୍ତ୍ର ଶାସ୍ତ୍ରର ହିଁ ପ୍ରଧାନତା ଥିବା ଜଣାଯାଏ ।

ବିକ୍ରମଶିଳାରେ ଭାରତୀୟ ଛାତ୍ରମାନଙ୍କ ବ୍ୟତୀତ ବହୁ ବିଦେଶୀ ଛାତ୍ର ମଧ୍ୟ ବିଦ୍ୟାଧ୍ୟୟନପାଇଁ ଆସୁଥିଲେ । ଛାତ୍ରମାନଙ୍କର ନିବାସ ଏବଂ ଭୋଜନାଦିର ପ୍ରବନ୍ଧ ବିଶ୍ୱବିଦ୍ୟାଳୟ ପକ୍ଷରୁ କରାଯାଉଥିଲା । ବିହାରମଧ୍ୟରେ 'ବୋଧିସତ୍ତ୍ୱଙ୍କ'ର ମୂର୍ତ୍ତି ଥିଲା । ଶହ ଶହ ତାନ୍ତ୍ରିକ ଦେବାଳୟ ଥିଲା । ବିଦେଶୀ ଛାତ୍ରମାନଙ୍କୁ ବିଶେଷ ସୁବିଧା ପ୍ରାପ୍ତ ହେଉଥିଲା ।

୧୧୯୩ ଖ୍ରୀଷ୍ଟାବ୍ଦରେ ପାଳବଂଶୀ ରାଜାମାନଙ୍କ ଅଧଃପତନ ସଙ୍ଗେ ସଙ୍ଗେ ବିକ୍ରମଶିଳା ବିଶ୍ୱବିଦ୍ୟାଳୟ ସବୁକାଳପାଇଁ ଅନ୍ଧକାରମଧ୍ୟରେ ବିଲୀନ ହୋଇଗଲା । ବିଜୟ-ମଦାନ୍ଧ ମୁସଲମାନ ଆକ୍ରମଣକାରୀମାନେ ଗୋବିନ୍ଦପାଳଙ୍କୁ ମାରି ନାଇନ୍ଦା ଏବଂ ବିକ୍ରମଶିଳାକୁ ଲୁଣ୍ଠନ କରିଥିଲେ । ହଜାର ହଜାର ବିଦ୍ୟାର୍ଥୀ ଏବଂ ଅଧ୍ୟାପକ ନିହତ ହୋଇଥିଲେ ।

**ପ୍ରାଚୀନ ଏବଂ ଆଧୁନିକ ଶିକ୍ଷା ପ୍ରଣାଳୀ : –**

ପ୍ରାଚୀନ ଶିକ୍ଷା ପ୍ରଣାଳୀର ଧ୍ୟେୟ ବହୁ ଉଚ୍ଚରେ ଥିଲା; ଆଧୁନିକ ଶିକ୍ଷା ପ୍ରଣାଳୀର ଧ୍ୟେୟ ଅତ୍ୟନ୍ତ ନୀଚଗାମୀ ହୋଇଅଛି । ଇଂରେଜୀ ରାଜ୍ୟରେ ଶିକ୍ଷା ପ୍ରଣାଳୀର ଏକମାତ୍ର ଧ୍ୟେୟ ଥିଲା ଯେ ଅଂରେଜୀ ପଢ଼ା ଲେଖା ଭାରତୀୟ ଅଂରେଜୀ ସାମ୍ରାଜ୍ୟକୁ ଚଳାଉଥିବା ଯନ୍ତ୍ରରେ କଳ କବ୍‌ଜାର କାମ ଦେବ ଏବଂ ବାହାରକୁ ଭାରତୀୟ ଦେଖାଯାଉଥିଲେ ମଧ୍ୟ ଅନ୍ତରରେ ପୂରା ଅଂରେଜୀ ପାଲଟି ଯାଇଥିବ । ଏପରି କି ଅଂଗ୍ରେଜଙ୍କଠାରୁ ମଧ୍ୟ ଦୁଇ ପାଦ ଆଗକୁ ବଢ଼ିଥିବା ଅଂଗ୍ରେଜ ହୋଇ-ଥିବ । ସ୍ୱାତନ୍ତ୍ର୍ୟ ପ୍ରାପ୍ତି ପରେ ମଧ୍ୟ ଶିକ୍ଷା ପ୍ରଣାଳୀରେ କୌଣସି ଅନ୍ତର ଆସି ନାହିଁ । ସ୍ୱାତନ୍ତ୍ର୍ୟ ପୂର୍ବରୁ ଅଂଗ୍ରେଜମାନଙ୍କ ନିକଟରୁ ଜ୍ଞାନ ଆହରଣପାଇଁ ଅପେକ୍ଷା-ରତ ଭାରତବାସୀ ଆଜି ଅନ୍ୟାନ୍ୟ ଉନ୍ନତ ରାଷ୍ଟ୍ରଙ୍କ ନିକଟରୁ ତାହା ଲାଭ କରିବା ପାଇଁ ଲାଳାୟିତ । ଏତେ ବର୍ଷ ସ୍ୱାଧୀନତା ପ୍ରାପ୍ତି ପରେ ଭାରତୀୟ ଶିକ୍ଷା ପ୍ରଣାଳୀ ନିଜ ଉଦ୍ଦେଶ୍ୟକୁ କିପରିଭାବରେ ପୂରଣ କରିପାରିଅଛି, ତାହାର କଟୁ ଅନୁଭବ ପ୍ରତ୍ୟେକ ଭାରତୀୟଙ୍କୁ ହେଉଅଛି । କେବଳ ଚାକିରି ହିଁ ଶିକ୍ଷାଲାଭର ଧ୍ୟେୟ ହୋଇଥିବାରୁ ଆଜିର ବିଦ୍ୟାର୍ଥୀ ଶରୀର ଶ୍ରମପ୍ରତି ଉଦାସୀନ ହୋଇଉଠୁଛି । ଫଳରେ କୃଷି, ବାଣିଜ୍ୟ ଆଦି କୌଣସି ଶ୍ରମମୂଳକ ଧନ୍ଦା କରିବାକୁ ମନ ବଳାଉ ନାହିଁ । "ଏମ.ଏ." ଓ "ବି.ଏ." ଉପାଧିଧାରୀମାନଙ୍କୁ ମଧ୍ୟ ଚାକିରି ନ ମିଳିବାରୁ ନୈରାଶ୍ୟମଧ୍ୟରେ ଗତି କରିବାକୁ ପଡ଼ୁଛି, କାରଣ ନୌକରୀ ବ୍ୟତୀତ ଏମାନେ ଆଉ କିଛି କରିବାକୁ ସମର୍ଥ ହେଉ ନାହାନ୍ତି । ଆଜିର ଏହି ବେକାରୀ କାଳରେ ସବୁ ଉପାଧିଧାରୀଙ୍କୁ ନୌକରୀ ମିଳିବ ବା କିପରି ? ଏହାଛଡ଼ା ପୁସ୍ତକ ଜ୍ଞାନଦ୍ୱାରା କେତେକ ପରୀକ୍ଷାରେ ପାସ କରି ନେବା ହିଁ ଧ୍ୟେୟ ରହିଥିବା ହେତୁ ଆଜିକାଲିର ବିଦ୍ୟାର୍ଥୀ ଅନ୍ୟ କାମପାଇଁ ଅଯୋଗ୍ୟ ହୋଇଯାଉଛି । 'ବି.ଏ.', 'ଏମ୍.ଏ.' ପର୍ଯ୍ୟନ୍ତ ପହଞ୍ଚିବାରେ ବିଦ୍ୟାର୍ଥୀର ନିସର୍ଗ–ସିଦ୍ଧ ଶକ୍ତିଗୁଡ଼ିକ ମଧ୍ୟ କ୍ଷୀଣ ହୋଇଯାଉଛି । ଶାରୀରିକ ଶକ୍ତି ମଧ୍ୟ ନିଜଠାରୁ ବହୁ ଦୂରକୁ ପଳାଇଯାଉଛି । ବିଦ୍ୟାର୍ଥୀ ଜୀବନରୁ ହିଁ ବହୁ ରୋଗରେ ଶିକାର ହୋଇ ଭାରତୀୟ ଯୁବକ ଯେତେବେଳେ ସାଂସାରିକ

ଜୀବନରେ ପ୍ରବେଶ କରେ, ବେକାରୀର ଭୂତ ତାକୁ ଗ୍ରାସ କରିବାକୁ ବସେ ଏବଂ ପରିଣାମତଃ ସେ ଦୁର୍ଦ୍ଦଶାଗ୍ରସ୍ତ ହୋଇପଡ଼େ ।

ଆଧୁନିକ ଶିକ୍ଷା ପ୍ରଣାଳୀର ଦୁର୍ଗୁଣମାନଙ୍କ ହେତୁ ସମାଜରେ ଷଡରିପୁମାନଙ୍କର ସମ୍ରାଜ୍ୟ ପୁରିରହିଛି ଏବଂ ରାଷ୍ଟ୍ର ପ୍ରବଳ ବେଗରେ ପତନୋନ୍ମୁଖୀ ହେବାକୁ ବସିଛି । ଏହାର ବିପରୀତ ଯଦି ପ୍ରାଚୀନ ଶିକ୍ଷା ପ୍ରଣାଳୀ ଉପରେ ଦୃଷ୍ଟିପାତ କରଯାଏ ତେବେ ଜ୍ଞାତ ହେବ ଯେ ଯେଉଁଠି ଆଧୁନିକ "ଏମ୍. ଏ." ପରୀକ୍ଷାରେ ଉତୀର୍ଣ୍ଣ ନବଯୁବକ ସାଂସାରିକ ଜୀବନରେ ପ୍ରବେଶ କଲାବେଳକୁ ପ୍ରାୟ ବୃଦ୍ଧ ହିଁ ହୋଇଯାଏ, ସେଠାରେ ପ୍ରାଚୀନ କାଳର ସ୍ନାତକ ବ୍ରହ୍ମଚର୍ଯ୍ୟାଶ୍ରମ ସମାପ୍ତ କଲା ପରେ ଯେତେବେଳେ ସାଂସାରିକ ଜୀବନରେ ପ୍ରବେଶ କରୁଥିଲା ସେତେବେଳେ ସେ ପୂର୍ଣ୍ଣତୟା ନବଯୁବକ ହିଁ ରହୁଥିଲା । ନବଜୀବନ, ନବ ଆକାଙ୍କ୍ଷା, ନବସ୍ଫୂର୍ତ୍ତି ଆଦିର ସମୁଦ୍ର ତା'ର ହୃଦୟରେ ତରଙ୍ଗାୟିତ ହେଉଥିଲା । ନିରଶ ତାକୁ ବ୍ୟଥିତ କରିପାରୁ ନ ଥିଲା । ପ୍ରାଚୀନ କ୍ଷତ୍ରିୟମାନଙ୍କ ପରି ସେ ଜୀବନର ସମସ୍ତ ଆପଦ ଓ ଅସୁବିଧାମାନଙ୍କସହିତ ହସି ହସି ଲଢ଼ିପାରୁଥିଲା । ଜୀବନ–ନିର୍ବାହ ତା'ପାଇଁ ଏତେ କଠିନ ନ ଥିଲା, ଯେଉଁଭଳି କଠିନ ଆଜିକାଲିର ଯୁବକମାନଙ୍କପ୍ରତି ହୋଇ ଅଛି । ପ୍ରାଚୀନ କାଳରେ ସମସ୍ତଙ୍କ ଯୋଗକ୍ଷେମ ପ୍ରତି ଧ୍ୟାନ ଦେବା ରାଜାମାନଙ୍କର ପବିତ୍ର କର୍ତ୍ତବ୍ୟ ବିବେଚିତ ହେଉଥିଲା ଏବଂ ସେମାନେ ସେଥିପ୍ରତି ଉପଯୁକ୍ତ ଦୃଷ୍ଟି ଦେଉଥିଲେ ।

ସୁପ୍ତ ଶକ୍ତିର ପୁନରୁତ୍‌ଥାନଦ୍ୱାରା ସଂସାର ଦିଗରେ ମନୁଷ୍ୟର ମନକୁ ପ୍ରେରଣା ଦେବା ହେଉଛି ଶିକ୍ଷାର ମୂଳ ଲକ୍ଷ୍ୟ । ଆମ ଦେଶର ଦୁର୍ଭାଗ୍ୟ ଯେ, ଶିକ୍ଷାର ଏହି ପବିତ୍ର ଲକ୍ଷ୍ୟ ଆଜି ଦିଶାହୀନ ହୋଇପଡ଼ିବା ଫଳରେ ଦେଶ ନିଜର ପ୍ରାଚୀନ ସଂସ୍କୃତି ଓ ମୌଳିକ ଚିନ୍ତାଧାରାଠାରୁ କାଳକ୍ରମେ ବିଚ୍ଛିନ୍ନ ହେବାରେ ଲାଗିଛି । ପରିସ୍ଥିତି ଏଭଳି ଅଣାୟତ୍ତ ଯେ, ଜୀବନ ଓ ଜଗତ, ଆତ୍ମା ଓ ପରମାତ୍ମା ଆଦି ଗହନ ବିଷୟଗୁଡ଼ିକର ତାର୍କିକ ବିଶ୍ଳେଷଣର ପରିସର ସମ୍ପୂର୍ଣ୍ଣରୂପେ ସଙ୍କୁଚିତ । ଆଧୁନିକ ଶିକ୍ଷାପ୍ରାପ୍ତ ଜଣେ ଯୁବକ ପ୍ରତ୍ୟେକ ଅବସ୍ଥାରେ ଶ୍ରଦ୍ଧାବିହୀନ, ହୃଦୟହୀନ ଏବଂ ଆସ୍ଥାଶୂନ୍ୟ ହୋଇପଡୁଛି । ତା'ର ସାଧାରଣ ଆଚରଣ ଏଭଳି ସ୍ଥିତିରେ ଆସି ପହଞ୍ଚିଛି ଯେ ଶୁଷ୍କତା, ନୀରସତା ଓ ଯାନ୍ତ୍ରିକତା ଆଦି ଦୁର୍ଗୁଣମାନଙ୍କର ଘେରମଧ୍ୟରେ ରହି ସେ ଆଜି କିଂକର୍ତ୍ତବ୍ୟ ବିମୂଢ଼ । ଆଧୁନିକ ଶିକ୍ଷା ଗ୍ରହଣ ପ୍ରଣାଳୀର ଏକ ମାତ୍ର ଲକ୍ଷ୍ୟ ହେଉଛି, ଯେ କୌଣସି ଉପାୟରେ ହେଉପଛେ

ଗୋଟିଏ ଗକିରିର ବ୍ୟବସ୍ଥା ହୋଇଗଲେ ଜୀବନତରୀ ସ୍ୱଚ୍ଛନ୍ଦରେ କୂଳରେ ପହଞ୍ଚିବ, ତା'ଛଡ଼ା ଅନ୍ୟ ପନ୍ଥା ନାହିଁ । ଏଭଳି ଅସ୍ୱାଭାବିକ ମାନସିକ ସ୍ଥିତିର ପ୍ରଭାବରେ ଆଜିର ଶିକ୍ଷିତ ଯୁବକ ଆମ ପ୍ରାଚୀନ ଶିକ୍ଷାର ଗୂଢ଼ମର୍ମ–'ସତ୍ୟଂ ଶିବଂ ସୁନ୍ଦରମ୍' ର ନୈସର୍ଗିକ ଭାବନା–ଯାହାକି ମାନବ ଜୀବନର ପୂର୍ଣତା ପ୍ରାପ୍ତି ଲାଗି ଅପରିହାର୍ଯ୍ୟ ହୋଇପଡ଼ିଥିଲା ସେଗୁଡ଼ିକର ଉପାଦେୟତା ଓ ଆବଶ୍ୟକତା ସମ୍ପର୍କରେ ସ୍ପଷ୍ଟ ଧାରଣା ମଧ୍ୟ କରିପାରୁ ନାହିଁ । ଏହାକୁ ଭାଗ୍ୟର ବିଡ଼ମ୍ବନା ହିଁ କୁହାଯାଇପାରେ ଯେ, ନିଜ ଦେଶର ସଂସ୍କୃତି, ସଭ୍ୟତା, ଅଧ୍ୟାତ୍ମ ଜ୍ଞାନ, କଳା-କୌଶଳ ଏବଂ ଭୌଗୋଳିକ ଓ ଐତିହାସିକ ସ୍ଥିତି ଆଦି ବିଭିନ୍ନ ଦୃଷ୍ଟିରୁ–ଅନୁକୂଳ ଆମର ନିଜସ୍ୱ ଶିକ୍ଷା ପଦ୍ଧତିପ୍ରତି ଯେଉଁଭଳି ଆଗ୍ରହ ପ୍ରକାଶ ପାଇବା କଥା ସ୍ୱାଧୀନତା ପ୍ରାପ୍ତିର ଚାଳିଶ ବର୍ଷରୁ ଅଧିକ ସମୟ ଅତିକ୍ରାନ୍ତ ହୋଇଯାଇଥିଲେ ହେଁ–ତାହା ସମ୍ଭବ ହୋଇପାରୁ ନାହିଁ । ଏହା ଆମ ଦାସତ୍ୱ-ମାନସିକତାର ହିଁ–ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶିକ୍ଷା ମାନବକୁ ପ୍ରକୃତ ଚରିତ୍ରବାନ୍ କରାଇବା ଦାୟିତ୍ୱ ବହନ କରିଥାଏ ଏବଂ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇଥାଏ–ଶୁଦ୍ଧ, ପୂତ, ସନ୍ତୁଳିତ ଜୀବନ ଧାରଣା ପ୍ରଣାଳୀ ଗ୍ରହଣ କରିବାଦ୍ୱାରା କିନ୍ତୁ ଚିର ପ୍ରଚଳିତ ଆମର ଏହି ଧାରଣା ଓ କାର୍ଯ୍ୟ ପ୍ରଣାଳୀର ଅନାବଶ୍ୟକ ପରିବର୍ତ୍ତନଦ୍ୱାରା ଆମେ ଯେଉଁ ଅଦରକାରୀ ତଥା କ୍ଷତିକାରକ ଶିକ୍ଷା ପଦ୍ଧତିର ଶିକାର ହୋଇପଡ଼ୁଛୁ ତାହା ଆମ ଦେଶର ସର୍ବସ୍ୱ–ଯୁବକ ଯୁବତୀମାନଙ୍କୁ ବିଜ୍ଞାନ ଶିକ୍ଷା ନାମରେ କେବଳ ଗୋଟିଏ ଗୋଟିଏ ଯନ୍ତ୍ରମାନବରୂପରେ ପରିଣତ କରିଦେବାରେ ଲାଗିଛି । ଭାବମୟ ମନୁଷ୍ୟର ପରିବର୍ତ୍ତନ ଘଟିଛି ଭାବନା–ବିହୀନ ସ୍ୱାର୍ଥ–ସାଧନା ପ୍ରୟାସି ବ୍ୟକ୍ତି ରୂପରେ । ଏହି ପଦ୍ଧତିର ସମୂଳ ପରିବର୍ତ୍ତନସହ ଧର୍ମପ୍ରେରିତ ନୈତିକତାପୂର୍ଣ୍ଣ ଶିକ୍ଷା ପ୍ରଣାଳୀକୁ ଗ୍ରହଣ କରିନେବାଦ୍ୱାରା ହିଁ ଆଜିର ବିକୃତ-ଚିନ୍ତା-ପ୍ରସୂତ ଶିକ୍ଷା ବ୍ୟବସ୍ଥା ବଦଳରେ ଆମର ଅଭିଳଷିତ କାମନା ରୂପଗ୍ରହଣ କରିବା ସମ୍ଭବ ହେବ ।

ପ୍ରାଚୀନ ଶିକ୍ଷା ପ୍ରଣାଳୀର ବିଶ୍ଳେଷଣ କଲେ ଜଣାଯାଏ ଯେ, ବୈଦିକ ଋଷିଗଣ ପରମାତ୍ମାଙ୍କୁ ମୁଖ୍ୟ ବୋଲି ସ୍ୱୀକାର କରିଛନ୍ତି– ଧନକୁ ନୁହେଁ । ସେମାନଙ୍କ ମତରେ ପ୍ରକୃତରେ ଧନ ସାଧ୍ୟ ନୁହେଁ, ସାଧନମାତ୍ର । ଧନ ରୋଜଗାର ଉଦ୍ଦେଶ୍ୟରେ ଦିଆ ଯାଉଥିବା ଶିକ୍ଷା-ଶିକ୍ଷା ନୁହେଁ । ଅଧ୍ୟାତ୍ମ ଜ୍ଞାନର ଶିକ୍ଷା ହିଁ ହେଉଛି ପ୍ରକୃତ ଶିକ୍ଷା । ଏଣୁ ବୈଦିକ ଯୁଗରେ ଆତ୍ମ-ସ୍ୱରୂପର ଜ୍ଞାନ ସଂସାର ବନ୍ଧନରୁ

ମନୁଷ୍ୟକୁ ମୁକ୍ତ କରିପାରିବା ବିଦ୍ୟା-ହାସଲକୁ ହିଁ ପ୍ରକୃତ ବିଦ୍ୟା ବୋଲି ମାନ୍ୟତା ଦିଆଯାଇଥିଲା । ମୁକ୍ତିଦାନକାରୀ ବିଦ୍ୟା ହିଁ ହେଉଛି ପ୍ରକୃତ ବିଦ୍ୟା । ଏସମ୍ପର୍କରେ ଦୃଢ଼ତାରସହ ଘୋଷଣାକରି କୁହାଯାଇଛି ଯେ–"ସା ବିଦ୍ୟା ଯା ବିମୁକ୍ତୟେ ।" ମାନବ ଜୀବନର ସାର୍ଥକତା-ଲାଗି ପରମାତ୍ମାଙ୍କୁ ପ୍ରାପ୍ତ କରିବା ଉଦ୍ଦେଶ୍ୟରେ ଶିକ୍ଷାଲାଭ କରାଯାଇଥାଏ । କେବଳ ଧନ-ଅର୍ଜନପାଇଁ ନୁହେଁ । ଈଶ୍ୱରଙ୍କର ସଭକ୍ତି ଆରାଧନାଦ୍ୱାରା ତାଙ୍କସହିତ ଏକାତ୍ମତା ପ୍ରତିଷ୍ଠା କରିବା ହିଁ ହେଉଛି-ଶିକ୍ଷା ବା ଜ୍ଞାନ ଲାଭର ସାର୍ଥକତା । ଧନସୁଖ ଏବଂ କାମସୁଖ ଜୀବନର ମୂଳଲକ୍ଷ୍ୟ ନୁହେଁ । ଶିକ୍ଷାର ସଫଳ ପ୍ରୟୋଗଦ୍ୱାରା ସଂସାରର ଜନ୍ମ-ମରଣ-ରୂପୀ ବନ୍ଧନରୁ ମୁକ୍ତି-ଲାଭ କରି ମନୁଷ୍ୟ ପ୍ରକୃତ ବିଦ୍ୱାନ୍ ପଦବାଚ୍ୟ ହୋଇଥାଏ । ପ୍ରାଚୀନ କାଳରେ ଗୁରୁକୁଳର ଋଷିମାନେ ବ୍ରହ୍ମଚାରୀଙ୍କୁ ସଂଯମ ଆଚରଣ ଓ ସଦାଚାର ପାଳନପ୍ରତି ଶ୍ରଦ୍ଧାବାନ୍ ହେବାଲାଗି ଉପଦେଶ ପ୍ରଦାନ କରୁଥିଲେ । ଏକଥା ସମ୍ଭବ ହୋଇ-ପାରୁଥିଲା, ଯେହେତୁ–ଋଷିଗଣ ଥିଲେ ବିରକ୍ତ (ଅନୁରକ୍ତିହୀନ) ଓ ଜିତେନ୍ଦ୍ରିୟ । ତେଣୁ ବିଦ୍ୟାର୍ଥୀମାନଙ୍କ ମନରେ ସେହି ଉପଦେଶର ପ୍ରଭାବ ଅନୁଭୂତ ହେଉଥିଲା । ପ୍ରକୃତ ସୁଖ ଦାନକାରୀ ଉତ୍ତମ ଶିକ୍ଷାର ପ୍ରଥମ ପାହାଚ ହେଉଛି ସଂଯମ ଆଚରଣ । ଏଥିପାଇଁ ଦିଆଯାଉଥିବା ଶିକ୍ଷାର ପ୍ରଭାବ ଗୁରୁକୁଳ ଆଶ୍ରମର ବ୍ୟବସ୍ଥାମଧ୍ୟରେ ହିଁ ବିଦ୍ୟାର୍ଥୀମାନଙ୍କ ମନରେ ପ୍ରତିଫଳିତ ହୋଇଥାଏ । ଆଜିର ଶିକ୍ଷା ଶାସ୍ତ୍ରୀଗଣ ଏ ବିଷୟରେ ଗୁରୁତ୍ୱର ସହିତ ବିଚାର କରୁଥିଲେ ହେଁ ବର୍ତ୍ତମାନ ପ୍ରଚଳିତ ଶିକ୍ଷା ପ୍ରଣାଳୀରେ ପରିବର୍ତ୍ତନ ଆଣିପାରିବା ଭଳି କୌଣସି ପ୍ରାରୂପକୁ କାର୍ଯ୍ୟକାରୀ କରାଇବାରେ ସମର୍ଥ ହୋଇପାରୁ ନାହାନ୍ତି । ଏହା ହିଁ ଆମପାଇଁ ଗଭୀର ଚିନ୍ତାର ବିଷୟ ହୋଇରହିଛି ।

ଗୁରୁକୁଳର କଠୋର ଶୃଙ୍ଖଳାମଧ୍ୟରେ ରହି ଗୁରୁଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତ୍ରିକାଳ ସନ୍ଧ୍ୟା, ବେଦାଧ୍ୟୟନ, ଗୁରୁସେବା, ସତ୍ୟଭାଷଣ ଓ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନଆଦି ବ୍ୟବସ୍ଥାଦ୍ୱାରା ବିଦ୍ୟାର୍ଥୀମାନେ ବ୍ରହ୍ମଚର୍ଯ୍ୟାଶ୍ରମର ସାର୍ଥକତା ଉପଲବ୍ଧି କରିବା ସମ୍ଭବ ହୋଇଥାଏ । ନଗର କୋଳାହଳରୁ ଦୂର ଗୁରୁକୁଳର ଶାନ୍ତ ନୈସର୍ଗିକ ବାତାବରଣ, ବିଶୁଦ୍ଧ ଜଳବାୟୁ, ସାତ୍ତ୍ୱିକ ଆହାର-ବିହାର ଏବଂ ସ୍ୱଚ୍ଛ ପରିବେଶମଧ୍ୟରେ ଆର୍ଯ୍ୟ ଶାସ୍ତ୍ରାନୁମୋଦିତ ଶିକ୍ଷାଲାଭ କରାଯାଇଥାଏ । ଆଶ୍ରମରେ ତପୋପୂତ ଜୀବନଯାପନ ଲାଗି ପରିବେଶ ରହିଥିବାରୁ ଏବଂ ସୁଯୋଗ ପ୍ରାପ୍ତ ହେଉଥିବାରୁ ବିଳାସପୂର୍ଣ୍ଣ ତଥା କୃତ୍ରିମ ଜୀବନଚର୍ଯ୍ୟାର ପରିସମାପ୍ତି ଘଟେ । ଆର୍ଯ୍ୟ ଶିକ୍ଷାର ପ୍ରଭାବରୁ କାମ, କ୍ରୋଧ,

ଲୋଭ, ମୋହ ଆଦିଦୋଷଗୁଡ଼ିକର ଅପଗତ (ଅପସୃତ, ରହିତ) ହେବାଫଳରେ ମନ ଦୋଷଶୂନ୍ୟ ଏବଂ ତତ୍ତ୍ୱ ଚିନ୍ତନର ଉପଯୋଗୀ ହୋଇଥାଏ । ତତ୍ତ୍ୱ ଚିନ୍ତନଦ୍ୱାରା ଶିକ୍ଷାର୍ଥୀର ବୁଦ୍ଧିକୁ ନିର୍ଦ୍ଦୋଷ, ଗୁଣବତୀ, ସଂସ୍କାରବତୀ, ଆରୋଗ୍ୟବତୀ ଏବଂ ପୂର୍ଣ୍ଣତାସମ୍ପନ୍ନ କରିବାପାଇଁ ସୁଯୋଗ ପ୍ରାପ୍ତ ହୋଇଥାଏ । ସଙ୍ଗେ ସଙ୍ଗେ ଅଧୃତି, ଅଧର୍ମ, ତଥା ଅଜ୍ଞାନ ଓ ଅସ୍ମିତା ଆଦି ଦୁର୍ଗୁଣମାନ ନଷ୍ଟ ହୋଇଯିବାରୁ ବୁଦ୍ଧି ଦୋଷ ରହିତ, ଧର୍ମ, ଜ୍ଞାନ, ବିରାଗ, ଐଶ୍ୱର୍ଯ୍ୟ ଓ ଧୃତିର ବିକାଶସହିତ ଯଥାଜାତ ମାନବ ଅପେକ୍ଷା ବିଲକ୍ଷଣ ଅବସ୍ଥାର ଉଦ୍‌ଭବ ହେବାକୁଲାଗେ । ଗୁରୁକୁଳର ପଠନ ବ୍ୟବସ୍ଥାମଧ୍ୟରେ ଆର୍ଥିକ ବିଷମତା କିମ୍ବା ଜାତି ବର୍ଣ୍ଣର ପାର୍ଥକ୍ୟ ଛାତ୍ରମାନଙ୍କ ମନରେ କୌଣସି କୁପ୍ରଭାବ ପକାଇ ପାରୁ ନ ଥିଲା । ତେଣୁ ଧନି, ଦରିଦ୍ର ତଥା ଜାତି-ବର୍ଣ୍ଣ ନିର୍ବିଶେଷରେ ଅନ୍ତେବାସୀ ସମସ୍ତେ ଏକାକାର ହୋଇଯାଉଥିଲେ । ଗୁରୁଙ୍କ ସାତ୍ତ୍ୱିକ ପ୍ରଭାବରେ ସମସ୍ତେ ପ୍ରଭାବାନ୍ୱିତ, କର୍ତ୍ତବ୍ୟ ପାଳନ ତତ୍ପର ଏବଂ ଅଧ୍ୟୟନରତ ରହୁଥାନ୍ତି । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି–ଶ୍ରୀକୃଷ୍ଣ ସୁଦାମା ଏବଂ ଦ୍ରୋଣ-ଦ୍ରୁପଦଙ୍କର ଆନ୍ତରିକ ସହଯୋଗ ପ୍ରବୃତ୍ତି ତଥା ଭେଦଭାବହୀନ ଜୀବନ ଯାପନ କଥା । ସମସ୍ତ ଅନ୍ତେବାସୀ ନିଜ ନିଜର ଗୁରୁଜନ ଓ କୁଳପତିଙ୍କ ପ୍ରତି ଅଗାଧ ଶ୍ରଦ୍ଧା ନିବେଦନସହ ପ୍ରତ୍ୟହ ଭକ୍ତିପୂର୍ଣ୍ଣ ଚିତ୍ତରେ ଅଧ୍ୟୟନ ଆରମ୍ଭ କରୁଥିଲେ । ବ୍ରହ୍ମଚର୍ଯ୍ୟାଶ୍ରମ ଶେଷ ହେବାପରେ ଯଥାଶକ୍ତି ଗୁରୁ-ଦକ୍ଷିଣା ଦେଇ ଗୁରୁଙ୍କର ଆଶୀର୍ବାଦ ପ୍ରାପ୍ତ ହେଉଥିଲେ । ଏହି ପ୍ରକ୍ରିୟାରେ ଅର୍ଥାଭାବଜନିତ ଚିନ୍ତା କୌଣସି ଧନହୀନ ପିଲାର ଅନ୍ତରାୟ ହେଉ ନଥିଲା । ଏସଂପର୍କରେ ଗୁରୁ ବରତନ୍ତୁଙ୍କ ଶିଷ୍ୟ କୌତ୍ସ ମହାରାଜା ରଘୁଙ୍କ ନିକଟରୁ ପ୍ରଚୁର ଧନ ସଂଗ୍ରହ କରି (ଚଉଦକୋଟି ସ୍ୱର୍ଣ୍ଣମୁଦ୍ରା) ଗୁରୁଙ୍କ ଚରଣରେ ଅର୍ପଣ କରିଥିବା ଘଟଣା ପ୍ରସିଦ୍ଧ ଉଦାହରଣ ହୋଇ ରହିଛି । ସେତେବେଳେ ଗୁରୁଙ୍କ ପ୍ରତି ଅଗାଧ ଭକ୍ତିଭାବ ଯୋଗୁଁ ତାଙ୍କର ଆଶୀର୍ବାଦ ଲାଭ କରିବା ସହଜ ହେଉଥିଲା । ମହାଭାରତ ଶାନ୍ତି ପର୍ବରେ କୁହାଯାଇଛି–

ନ ବିନା ଜ୍ଞାନ ବିଜ୍ଞାନେ ମୋକ୍ଷସ୍ୟାଧିଗମୋ ଭବେତ୍ ।
ନ ବିନା ଗୁରୁସମ୍ବନ୍ଧଂ ଜ୍ଞାନସ୍ୟାଧିଗମଃ ସ୍ମୃତଃ ।।
ଗୁରୁ ପ୍ଲାବୟିତା ତସ୍ୟ ଜ୍ଞାନଂ ପ୍ଲବ ଇହୋଚ୍ୟତେ ।
ବିଜ୍ଞାୟ କୃତ କୃତ୍ୟସ୍ତୁ ତୀର୍ଣ୍ଣାସ୍ତଦୁଭୟଂତ୍ୟଜେତ୍ ।।

(ଶାନ୍ତିଂ ୩୨୬–୨୨ ୨୩)

ଅର୍ଥାତ୍—"ଜ୍ଞାନ, ବିଜ୍ଞାନ ବିନା ମୋକ୍ଷ ପ୍ରାପ୍ତି ନ ହେଉଥିବାରୁ ସଦ୍‌ଗୁରୁଙ୍କ ସଂପର୍କରେ ନ ଆସିଲେ ଜ୍ଞାନ ବା ବିଦ୍ୟା ଲାଭ କରିବା ସମ୍ଭବ ହୋଇ ନ ଥାଏ । ଗୁରୁ ହିଁ ସଂସାର ସାଗର ପାରକରାଇ ଦେବାରେ ସମର୍ଥ ହୋଇଥାନ୍ତି । କାରଣ, ତାଙ୍କର ପ୍ରଦତ୍ତ ଜ୍ଞାନ ନୌକାତୁଲ୍ୟ ବୋଲି କୁହାଯାଇଅଛି । ମନୁଷ୍ୟ ସେହି ଜ୍ଞାନରୂପୀ ନୌକା ଲାଭ କରିବାଦ୍ୱାରା ଭବସାଗରରୁ ପାର ହୋଇ କୃତକୃତ୍ୟ ହୋଇଯାଏ । ପୁଣି ତା'ର ଅନ୍ୟ କୌଣସି ନୌକା କିମ୍ବା ନାବିକର ସାହାଯ୍ୟ ଆବଶ୍ୟକ ହୁଏ ନାହିଁ ।"

ଏଭଳି ଧାରଣା ଦୃଢ଼ ହୋଇଗଲେ ଗୁରୁଙ୍କ ପ୍ରତି ଛାତ୍ରମାନଙ୍କ ମନରେ ଅସୀମ ଶ୍ରଦ୍ଧା ଓ ଭକ୍ତିର ଉଦ୍ରେକ ହେବା ସ୍ୱାଭାବିକ । ଫଳରେ, ସେମାନେ ଆନ୍ତରିକତାର ସହିତ ଗୁରୁସେବା କରିଥାନ୍ତି । ସେହି ସମୟରେ ସାଧାରଣ ମାନ୍ୟତା ମଧ୍ୟ ଥିଲା—"ଗୁରୁ ଶୁଶ୍ରୁଷୟା ବିଦ୍ୟା" । ଅର୍ଥାତ୍—"ଗୁରୁଙ୍କର ସେବା ବିନା ବିଦ୍ୟା ପ୍ରାପ୍ତି ସମ୍ଭବ ନୁହେଁ ।" ଗୁରୁମାନେ ମଧ୍ୟ ଶିଷ୍ୟଙ୍କୁ ପୁତ୍ରତୁଲ୍ୟ ବାତ୍ସଲ୍ୟ ମମତା ପ୍ରଦାନ କରୁଥିଲେ । ଶାସ୍ତ୍ରରେ କୁହାଯାଇଛି—ଜ୍ଞାନେନହୀନା-ପଶୁଭିଃ ସମାନାଃ । ଜ୍ଞାନହୀନ ମନୁଷ୍ୟ ପଶୁତୁଲ୍ୟ ହୋଇଥାଏ । କେବଳ ବିଦ୍ୟାଧ୍ୟୟନଦ୍ୱାରା ହିଁ ଜ୍ଞାନ ପ୍ରାପ୍ତ ହୋଇ ପଶୁତା ଦୂରୀଭୂତ ହୁଏ । ଶିକ୍ଷାପ୍ରତି ପ୍ରାଚୀନ କାଳରେ କିଭଳି ସମ୍ମାନଜନକ ଦୃଷ୍ଟିକୋଣ ଗ୍ରହଣ କରାଯାଇଥିଲା, ତାହା ମହର୍ଷି ମନୁଙ୍କ ଉକ୍ତିରୁ ଜଣାଯାଏ । ଭଗବାନ୍ ମନୁ କହୁଛନ୍ତି—ଦଶ ବର୍ଷର ବ୍ରାହ୍ମଣ ଓ ଶହେ ବର୍ଷର କ୍ଷତ୍ରିୟ ଏହି ଉଭୟଙ୍କୁ ପିତା—ପୁତ୍ର ବୋଲି ବିଚାର କରିବା ଉଚିତ । ଉଭୟଙ୍କ ମଧ୍ୟରେ ବ୍ରାହ୍ମଣ ହେଉଛନ୍ତି ପିତାତୁଲ୍ୟ । ବିତ୍ତ, ବନ୍ଧୁ, ବୟସ, କର୍ମ ଓ ବିଦ୍ୟା—ଏହି ପାଞ୍ଚଗୋଟି ମାନ୍ୟ ସ୍ଥାନରେ ଉତ୍ତରୋତ୍ତର ଶ୍ରେଷ୍ଠ ହୋଇଥାନ୍ତି । ସମାଜର ସାଧାରଣ ମାନ୍ୟତା ଅନୁଯାୟୀ—ରଥାରୋହୀ, ଅତିବୃଦ୍ଧ, ରୋଗୀ, ବୋଝ ମୁଣ୍ଡେଇଥିବା ବ୍ୟକ୍ତି, ସ୍ତ୍ରୀ, ସ୍ନାତକ, ରାଜା ଏବଂ ବର—ଏମାନଙ୍କୁ ରାସ୍ତା ଛାଡ଼ିଦେବା ଉଚିତ । ଏହି ସମସ୍ତେ ଏକାଠି ଥିବା କଥା ବିଚାର କଲେ ସେମାନଙ୍କ ମଧ୍ୟରେ ରାଜା ଓ ସ୍ନାତକ ହେଉଛନ୍ତି ମାନ୍ୟର ଅଧିକାରୀ ଏବଂ ଏହି ଦୁହିଙ୍କମଧ୍ୟରେ ସ୍ନାତକ ହେଉଛନ୍ତି ବିଶେଷ ମାନ୍ୟର ପାତ୍ର । ଏହି ସମସ୍ତ ଉକ୍ତିରୁ ତତ୍କାଳୀନ ସମାଜରେ ଶିକ୍ଷାପ୍ରତି ଥିବା ନିର୍ମଳ ତଥା ମାର୍ଜିତ ମନୋବୃତ୍ତିର ପରିଚୟ ମିଳିଥାଏ ।

ଗୁରୁଙ୍କ କର୍ତ୍ତବ୍ୟ ସଂପର୍କରେ କହିବାକୁ ଯାଇ ଭଗବାନ ମନୁଙ୍କର ମନ୍ତବ୍ୟ ହେଉଛି—

ଉପନୀୟ ତୁ ଯଃ ଶିଷ୍ୟଂ ବେଦମଧ୍ୟାପୟେଦ୍ ଦ୍ୱିଜଃ ।
ସକଳ୍ପଂ ସରହସ୍ୟଂ ଚ ........... ସମାଗ୍ରର୍ଯ୍ୟଂ ପ୍ରଚକ୍ଷତେ ॥
ଏକଦେଶଂ ତୁ ବେଦସ୍ୟ ବେଦାଙ୍ଗାନ୍ୟପି ବା ପୁନଃ ।
ଯୋଽଧ୍ୟାପୟତି ବୃତ୍ୟର୍ଥମୁପାଧ୍ୟାୟଃ ସ ଉଚ୍ୟତେ ॥
ନିଷେକାଦୀନି କର୍ମାଣି ଯଃ କରୋତି ଯଥାବିଧି ।
ସଂଭବୟତି ଚାନ୍ନେନ ସ ବିପ୍ରୋ ଗୁରୁରୁଚ୍ୟତେ ॥
ଅଗ୍ନ୍ୟାଧେୟଂ ପାକଯଜ୍ଞାନଗ୍ନିଷ୍ଟୋମାଦିକାନ୍ମଖାନ୍ ।
ଯଃ କରୋତି ବୃତୋ ଯସ୍ୟ ସତସ୍ୟର୍ତ୍ୱିଗିହୋଚ୍ୟତେ ॥
ଯ ଆବୃଣୋତ୍ୟବିତଥଂ ବ୍ରହ୍ମଣା ଶ୍ରବଣାବୁଭୌ ।
ସ ମାତା ସ ପିତା ଜ୍ଞେୟସ୍ତଂ ନ ଦ୍ରୁହ୍ୟେତ କଦାଚନ ॥
ଉପାଧ୍ୟାୟାନ୍ଦଶାଗ୍ରର୍ଯ୍ୟ ଆଗ୍ରର୍ଯ୍ୟାଣାଂ ଶତଂ ପିତା ।
ସହସ୍ରଂ ତୁ ପିତୃନ୍ମାତା ଗୌରବେଣାତିରିଚ୍ୟତେ ॥
ଉତ୍ପାଦକ ବ୍ରହ୍ମଦାତ୍ରୋର୍ଗରୀୟାନ୍ ବ୍ରହ୍ମଦଃ ପିତା ।
ବ୍ରହ୍ମଜନ୍ମ ହି ବିପ୍ରସ୍ୟ ପ୍ରେତ୍ୟ ଚେହ ଚ ଶାଶ୍ୱତମ୍ ॥

ଅର୍ଥାତ୍—ଯେଉଁ ବ୍ରାହ୍ମଣ ଶିଷ୍ୟଙ୍କୁ ଉପବୀତ ଦାନ କରିବାପରେ କଳ୍ପ ଓ ରହସ୍ୟ (ଯଜ୍ଞ ବିଗ୍ରର ଓ ଉପନିଷଦ୍-ଶିକ୍ଷା) ସହିତ ବେଦ ପଢ଼ାନ୍ତି ତାଙ୍କୁ ହିଁ ଆଗ୍ରର୍ଯ୍ୟ କୁହାଯାଏ । ଯେଉଁମାନେ ଜୀବିକାର୍ଜ୍ଜନ ଲାଗି ବେଦାଙ୍ଗ ପଢ଼ାନ୍ତି ସେମାନେ ହେଉଛନ୍ତି ଉପାଧ୍ୟାୟ । ଯେଉଁମାନେ ଗର୍ଭାଧାନାଦି କାର୍ଯ୍ୟକୁ ଯଥାରୀତି ସମାପନ କରି ଅନ୍ନଦ୍ୱାର ଶିଷ୍ୟମାନଙ୍କୁ ପୋଷଣ କରନ୍ତି ସେହିଭଳି ବ୍ରାହ୍ମଣଙ୍କୁ ଗୁରୁ କୁହାଯାଏ । ଯେଉଁମାନେ ବରଣ ସ୍ୱୀକାର କରି ଅଗ୍ନିହୋତ୍ର, ପାକଯଜ୍ଞ ଏବଂ ଅଗ୍ନିଷ୍ଟୋମ ଯଜ୍ଞ ଆଦି ସମାପନ କରିଥାନ୍ତି ସେହିଭଳି ବ୍ରାହ୍ମଣ ହେଉଛନ୍ତି ଋତ୍ୱିକ । ଯେଉଁ ବ୍ରାହ୍ମଣ ନିର୍ଦ୍ଦୋଷ, ସତ୍ୟ ସ୍ୱରୂପ ବେଦକୁ ଶିଷ୍ୟର ଉଭୟ କର୍ଣ୍ଣରେ ପୂର୍ଣ୍ଣ କରିଦିଅନ୍ତି ତାଙ୍କୁ ସାକ୍ଷାତ୍ ପିତୃତୁଲ୍ୟ ମନେ କରିବ । ଆଗ୍ରର୍ଯ୍ୟ ହେଉଛନ୍ତି ଉପାଧ୍ୟାୟଙ୍କଠାରୁ ଶ୍ରେଷ୍ଠ । ଆଗ୍ରର୍ଯ୍ୟଙ୍କଠାରୁ ଶ୍ରେଷ୍ଠ ପିତା । ପିତାଙ୍କଠାରୁ ଶ୍ରେଷ୍ଠ ମାତା ଏବଂ ଜନ୍ମଦାତ ପିତାଙ୍କଠାରୁ ଶ୍ରେଷ୍ଠ ହେଉଛନ୍ତି ବେଦଜ୍ଞାନ ଦାନକାରୀ ଆଗ୍ରର୍ଯ୍ୟ । କାରଣ, ଏହାଦ୍ୱାରା ବ୍ରାହ୍ମଣଙ୍କ ଇହଲୋକ ଓ ପରଲୋକ ଉଭୟ ଅବସ୍ଥାରେ ସର୍ବଦା ନିତ୍ୟତ୍ୱ ପ୍ରାପ୍ତ ହୋଇଥାଏ ।

ଜ୍ଞାନଦାନକାରୀ ବେଦଜ୍ଞ ଆଗ୍ରର୍ଯ୍ୟଙ୍କସମ୍ପର୍କରେ ମହର୍ଷି ମନୁଙ୍କ ମତ ହେଲା—

କାମାନ୍ମାତା ପିତା ଚୈନଂ ଯଦୁତ୍ପାଦୟତୋ ମିଥଃ ।
ସଂଭୂତିଂ ତସ୍ୟ ତାଂ ବିଦ୍ୟାଦ୍ୟଦ୍ୟୋନାବଭିଜାୟତେ ॥
ଆଚାର୍ଯ୍ୟସ୍ତ୍ୱସ୍ୟ ଯାଂ ଯାତିଂ ବିଧିବଦ୍ବେଦ ପାରଗଃ ।
ଉତ୍ପାଦୟତି ସାବିତ୍ର୍ୟା ସା ସତ୍ୟା ସାଽଜରମରା ॥
ଅଳ୍ପଂ ବା ବହୁ ବା ଯସ୍ୟ ଶ୍ରୁତସ୍ୟୋପ କରୋତି ଯଃ ।
ତମ ପୀହଂ ଗୁରୁଂ ବିଦ୍ୟାଦ୍ ଶ୍ରୁତୋପ କ୍ରିୟୟା ତୟା ॥
ବ୍ରାହ୍ମସ୍ୟ ଜନ୍ମନଃ କର୍ତ୍ତା ସ୍ୱ ଧର୍ମସ୍ୟ ଚ ଶାସିତା ।
ବାଲୋଽପି ବିପ୍ରୋ ବୃଦ୍ଧସ୍ୟ ପିତା ଭବତି ଧର୍ମତଃ ॥

ଅର୍ଥାତ୍– ପରସ୍ପର କାମ ବଶ ହୋଇ ପିତା ମାତା ଯେଉଁ ଶରୀରକୁ ଉତ୍ପନ୍ନ କରିଥାନ୍ତି ସେହି ପ୍ରାଣୀର ଦେହଧାରଣ ସାଧାରଣ ପଶୁଙ୍କଠାରୁ ଭିନ୍ନ ନୁହେଁ । ବେଦଜ୍ଞ ଓ ଆଚାର୍ଯ୍ୟ ଯେଉଁ ଜାତିକୁ ସାବିତ୍ରୀ-ପ୍ରଦାନଦ୍ୱାରା ପୁନର୍ଜନ୍ମ ଦାନ କରିଥାନ୍ତି,ସେହିମାନେ ହିଁ ସତ୍ୟ ସ୍ୱରୂପ ଓ ଅଜର ଅମର ହୋଇଥାନ୍ତି । ଏହି ବ୍ୟବସ୍ଥାରୁ ଜାଣି ହେଉଛି ଯେ, ଶିକ୍ଷା କେବଳ ଜୀବିକାର୍ଜନ ଲାଗି ଦିଆଯାଉ ନଥିଲା । ଜୀବନ-ବିକାଶର ସମସ୍ତ ସମ୍ଭାବନାକୁ ଉଜ୍ଜୀବିତକରି ଏଭଳି ଗୋଟିଏ ଢଙ୍ଗରେ ନିର୍ମିତ କରାଯାଉଥିଲା, ଯେଉଁଥିରେ ସଂସ୍କାର, ବଂଶାନୁକ୍ରମ, ବାତାବରଣ, ପିତା-ମାତାଙ୍କର ପ୍ରଭାବ ଆଦି ବହୁ ବିଷୟର ସଂଯୋଗସତ୍ତ୍ୱେ ବିଶିଷ୍ଟ-ଶୈଳିର ଜୀବନ-ନିର୍ମାଣ ସମ୍ଭବ ହୋଇପାରୁଥିଲା । ଏହା ହିଁ ପ୍ରାଚୀନ ଶିକ୍ଷା ପ୍ରଣାଳୀର ବୈଶିଷ୍ଟ୍ୟ ଏବଂ ଏହାରି ମୂଳରେ ଥିଲା– ସଦ୍‌ଗୁରୁଙ୍କର କର୍ତ୍ତବ୍ୟନିଷ୍ଠା, ଅନାବିଳ ସ୍ନେହ, ଶ୍ରଦ୍ଧା ଓ ଶିକ୍ଷାଦାନ ପଦ୍ଧତିର ମହନୀୟତା । ସେଥିପାଇଁ ସେହି ସମୟରେ ଗୁରୁଙ୍କ ଗାରିମା ଚରମ ସୀମାରେ ପହଞ୍ଚି ପାରିଥିଲା । ଶିକ୍ଷକ, ଅଧ୍ୟାପକ ଓ ଉପାଧ୍ୟାୟ ଆଦି ଶବ୍ଦମାନଙ୍କ ଅପେକ୍ଷା ଲୋକ ବ୍ୟବହାରରେ ଗୁରୁ ଶବ୍ଦର ପ୍ରୟୋଗ ଓ ପ୍ରଚଳନ ଥିଲା ଅତ୍ୟଧିକ । ଗୁରୁ ଶବ୍ଦର ନାନାପ୍ରକାର ବ୍ୟାଖ୍ୟା ମଧ୍ୟରୁ କେତୋଟି ହେଉଛି ଯଥା–

(୧) "ଗରତି ସିଞ୍ଚତି କର୍ଣ୍ଣୟୋ ଜ୍ଞାନାମୃତମ୍ ଇତି ଗୁରୁଃ"–ଅର୍ଥାତ୍ ଯେ ଶିଷ୍ୟର କାନରେ ଜ୍ଞାନରୂପୀ ଅମୃତର ସିଞ୍ଚନ କରିଥାନ୍ତି ସେ ହେଉଛନ୍ତି ଗୁରୁ ।

(୨) "ଜରତି ଅଜ୍ଞାନାନ୍ଧକାରମ୍ ଇତି ଗୁରୁଃ"–ଅର୍ଥାତ୍ ଯେ ନିଜର ସଦୁପଦେଶ ମାଧ୍ୟମରେ ଶିଷ୍ୟର ଅଜ୍ଞାନରୂପୀ ଅନ୍ଧକାରକୁ ଦୂର କରିଦେଇଥାନ୍ତି, ସେ ହେଉଛନ୍ତି ଗୁରୁ ।

(୩) "ଗୁଣାଦି ଧର୍ମାଦି ରହସ୍ୟମ୍ ଇତି ଗୁରୁଃ" –ଅର୍ଥାତ୍ ଯେ ନିଜର ଶିଷ୍ୟକୁ ଧର୍ମାଦି ଜ୍ଞାତବ୍ୟ ତଥ୍ୟମାନଙ୍କୁ ଉପଦେଶ ଛଳରେ ବୁଝାଇ ଦେଇଥାନ୍ତି ସେ ହେଉଛନ୍ତି ଗୁରୁ ଏବଂ

(୪) "ଗାରୟତେ ବିଜ୍ଞାପୟତି ଶାସ୍ତ୍ର ରହସ୍ୟମ୍ ଇତି ଗୁରୁଃ"–ଅର୍ଥାତ୍ ଯେ ବେଦର ରହସ୍ୟଗୁଡ଼ିକୁ ନିଜର ଶିଷ୍ୟମାନଙ୍କୁ ଉତ୍ତମରୂପେ ବୁଝାଇ ଦେଇଥାନ୍ତି ସେ ହେଉଛନ୍ତି ଗୁରୁ ।

ପ୍ରାଚୀନ କାଳରେ ଶିକ୍ଷାଲାଭର ଅର୍ଥ ହିଁ ହେଉଥିଲା ଗୁରୁକୁଳ ନିବାସ । କାରଣ, ଗୁରୁଙ୍କର ବ୍ୟକ୍ତିଗତ ଜୀବନଚର୍ଯ୍ୟାରୁ ବଳି ଅନ୍ୟ କୌଣସି ଉତ୍ତମ ଶିକ୍ଷା ଆଶାକରାଯାଇନପାରେ । ଜାଜ୍ୱଲ୍ୟମାନ ଅଗ୍ନିତୁଲ୍ୟ ପବିତ୍ର ଚରିତ୍ର ଗୁରୁଙ୍କର ସହବାସଦ୍ୱାରା ଶିଷ୍ୟ ବାଲ୍ୟକାଳରୁ ହିଁ ସମସ୍ତ ଶୁଦ୍ଧ ଆଚରଣ ଶିକ୍ଷା କରିବା ସୁଯୋଗ ଲାଭ କରିଥାଏ । ଏହା ହିଁ ଶିଷ୍ୟପାଇଁ ଉଚ୍ଚତମ ଶିକ୍ଷାର ସଜୀବ ଆଦର୍ଶରୂପେ ଗୃହୀତ ହୋଇଥିଲା । ପବିତ୍ର ଜୀବନର ପ୍ରତ୍ୟକ୍ଷ ଉଦାହରଣ ହିଁ ମାନବର ଅନ୍ତଃସ୍ଥିତ ପ୍ରସୁପ୍ତ ଦେବତ୍ୱକୁ ଜାଗ୍ରତ କରିବାରେ ସମର୍ଥ ହୋଇଥାଏ । ଏଭଳି ପବିତ୍ର ବାତାବରଣମଧ୍ୟରେ ସେତେବେଳେ ଗୁରୁଙ୍କପ୍ରତି ସର୍ବୋଚ୍ଚ ସ୍ତରର ସମ୍ମାନ ପ୍ରଦର୍ଶନସହ ଶିଷ୍ୟ କଣ୍ଠରୁ ନିର୍ଗତ ହୋଇଥିଲା–

ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବ ମହେଶ୍ୱର ।
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।।
ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଲାକୟା ।
ଚକ୍ଷୁ ରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।।
ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତ ଯେନ ଚରାଚରମ୍ ।
ତତ୍‌ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।।

ଏଭଳି ପବିତ୍ର ଚିନ୍ତାରେ ଓତପ୍ରୋତ ହୋଇଥିବା ଶିଷ୍ୟମାନେ ହିଁ ସେହିଭଳି ଆଚରଣଦ୍ୱାରା ଗୁରୁଙ୍କର ଅନାବିଳ ସ୍ନେହ, ଶ୍ରଦ୍ଧା, ଆଦର ଓ ଆଶୀର୍ବାଦ ପ୍ରାପ୍ତ କରିବାରେ ସମର୍ଥ ହୋଇଥାନ୍ତି । ସେହି ପରିବେଶର ସାର୍ଥକ ପ୍ରଭାବଦ୍ୱାରା ହିଁ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇଥାଏ । ନିଜକୁ ଶିଷ୍ୟ-ସହିତ ଏକାକାର କରିଦେଇ ଗୋଟିଏ ସମ୍ପୂର୍ଣ୍ଣ ଅଜ୍ଞ ବାଳକକୁ ପ୍ରକୃତ ଅର୍ଥରେ ଯୋଗ୍ୟ ନାଗରିକରୂପେ ପ୍ରତିଷ୍ଠିତ କରାଇଦେବାରେ ଗୁରୁଙ୍କ ଅବଦାନ ଅବିସ୍ମରଣୀୟ । ସେହି ସମୟର ସୁବ୍ୟବସ୍ଥିତ ବ୍ୟବସ୍ଥା ଆଜି ଇତିହାସର ସାମଗ୍ରୀ

ହୋଇ ରହିଛି । ତଥାପି ବହୁକାଳ ବିତିଯିବାପରେ ମଧ୍ୟ ପ୍ରାଚୀନ ଶିକ୍ଷାର ପ୍ରଭାବ ଜନମାନସରେ ବିମଳ ଆନନ୍ଦ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛି । ଗୁରୁ ପ୍ରକୃତ ଅର୍ଥରେ ଆଦର ନ କଲେ ଏବଂ ଆନ୍ତରିକତାର ସହ ଉଦ୍ୟମ ନ କଲେ ଶିଷ୍ୟକୁ ଶିକ୍ଷାଦାନ କରିପାରିବେ ନାହିଁ । ଶିକ୍ଷା କ୍ଷେତ୍ରରେ ସେତେବେଳେ ଗୁରୁଙ୍କ ଦାୟିତ୍ୱ ଥିଲା ଅତ୍ୟଧିକ । ମହର୍ଷି ଯାଜ୍ଞବଲ୍କ୍ୟ କହୁଛନ୍ତି –

ଉପନୀୟ ଗୁରୁଃ ଶିଷ୍ୟଂ ମହାବ୍ୟାହୃତି ପୂର୍ବକମ୍ ।
ବେଦ ମଧ୍ୟାପୟେଦେନଂ ଶୌଚ ଚାରଂଷ୍ଟ ଶିକ୍ଷୟେତ୍ ।।

ଅର୍ଥାତ୍–ଉପନୟନ ବିଧି ସମାପ୍ତ ହେବା ପରେ ଗୁରୁ ନିଜର ଶିଷ୍ୟଙ୍କୁ ଭୂଃ, ଭୁବଃ, ସ୍ୱଃ ଏହି ବ୍ୟାହୃତିମାନଙ୍କୁ ଉଚ୍ଚାରଣ କରାଇ ବେଦାଧ୍ୟୟନ ଆରମ୍ଭ କରିବେ । ଦନ୍ତ ଧାବନ, ସ୍ନାନ ଆଦି ସମସ୍ତ ପ୍ରାତଃ କର୍ମଠାରୁ ଶୌଚର ବିଶଦ ବିଧିବିଧାନସଂପର୍କରେ ଶିକ୍ଷା ଦେବେ । କାରଣ ଶାସ୍ତ୍ରରେ ଆଚାରକୁ ହିଁ ପରମ-ଧର୍ମ ବୋଲି ସ୍ୱୀକାର କରାଯାଇଅଛି । 'ବିଷ୍ଣୁ ସହସ୍ରନାମ' ମତରେ–

ସର୍ବାଗମାନାମାଚାରଃ ପ୍ରଥମଂ ପରିକଳ୍ପତେ ।
ଆଚାର ପ୍ରଭବୋ ଧର୍ମୋ ଧର୍ମସ୍ୟ ପ୍ରଭୁରଚ୍ୟୁତଃ ।।

ଅର୍ଥାତ୍–"ସମସ୍ତ ଶାସ୍ତ୍ରରେ ଆଚାରକୁ ହିଁ ବିଶେଷ ଗୁରୁତ୍ୱ ଦିଆଯାଇଅଛି । ଏହି ଆଚାର ପାଳନଦ୍ୱାରା ହିଁ ଧର୍ମର ଉଦୟ ହୋଇଥାଏ ଏବଂ ସେହି ଧର୍ମର ଧାରକ ହେଉଛନ୍ତି ସ୍ୱୟଂ ଭଗବାନ୍ ଅଚ୍ୟୁତ ।"

ଆଚାର ସଂପର୍କରେ ବିଭିନ୍ନ ଶାସ୍ତ୍ରରେ ବହୁ ବିଷୟର ଉଲ୍ଲେଖ କରାଯାଇଅଛି । ଉଦାହରଣସ୍ୱରୂପ ଯାଜ୍ଞବଲ୍କ୍ୟ ସ୍ମୃତିକୁ ନିଆଯାଇପାରେ । ଏହି ସ୍ମୃତି ପ୍ରଧାନତଃ ତିନୋଟି ଅଧ୍ୟାୟରେ ବିଭକ୍ତ । ତହିଁର ପ୍ରଥମ ଅଧ୍ୟାୟ ହେଉଛି–"ଆଚାରଧ୍ୟାୟ ।" ଏହା ବାଦ୍ 'ଆଚାରଦର୍ଶ' ଆଦି ଅନେକ ସ୍ୱତନ୍ତ୍ର ଗ୍ରନ୍ଥ ମଧ୍ୟ ଆଚାର ବିଷୟକ ନିୟମାବଳୀରେ ପରିପୂର୍ଣ୍ଣ ହୋଇ ରହିଛି । 'ଏହି ସମସ୍ତ ବିଷୟ ପଢ଼ ବା ଉଚିତ' ବୋଲି ଶିଷ୍ୟକୁ କହିଦେଇଗଲେ ପ୍ରକୃତ ଅର୍ଥରେ ଶିକ୍ଷାଦାନ ହେଲା ନାହିଁ । ଆଚରଣଦ୍ୱାରା ଶିଷ୍ୟ ଏହାକୁ କିଭଳି ପ୍ରୟୋଗ କରିପାରୁଛି ? ପ୍ରୟୋଗ କରିବାରେ ସେ ଆଗ୍ରହ ପ୍ରକାଶ କରୁଛି କି ନାହିଁ ? ପ୍ରକୃତରେ କେଉଁଠି କ'ଣ ଅସୁବିଧା ସୃଷ୍ଟି ହେଉଛି–ଏଭଳି ବିଭିନ୍ନ ପ୍ରଶ୍ନର ବିଚାରକରି ଗୁରୁ ଶିଷ୍ୟର ସମସ୍ତ ବ୍ୟାବହାରିକ ଅସୁବିଧାଗୁଡ଼ିକ ଦୂର କରିଦେଇଥାନ୍ତି । ଯେପରିକି ଶିଷ୍ୟ ସେହି ଆଚରଣ ପଦ୍ଧତିକୁ ଆନନ୍ଦରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସହଜଭାବେ

କାର୍ଯ୍ୟରେ ପ୍ରୟୋଗ କରିପାରିବ । ଶିଷ୍ୟ ମନରେ ଏହି ବ୍ୟବସ୍ଥାପ୍ରତି ଆଗ୍ରହ ସୃଷ୍ଟି କରାଇ ଦେବାରେ ହିଁ ଗୁରୁଙ୍କର ବିଶେଷତ୍ୱ ଉପଲବ୍ଧ ହୋଇଥାଏ ଏବଂ ଉପ-ଯୁକ୍ତ ବିଦ୍ୟାର୍ଥୀ ସୃଷ୍ଟି ହୋଇଥାନ୍ତି ।

ଏସଂପର୍କରେ ଭଗବାନ୍ ମନୁଙ୍କ ମତ ହେଲା–

ଉପନୀୟ ଗୁରୁଃ ଶିଷ୍ୟଂ ଶିକ୍ଷୟେଚ୍ଛୌଚମାଦିତଃ ।
ଆଚାର ମଗ୍ନିକାର୍ଯ୍ୟଂ ଚ ସନ୍ଧ୍ୟୋପାସନମେବ ଚ ।।
ଅଧ୍ୟେଷ୍ୟ ମାଣସ୍ତ୍ୱାଚାନ୍ତୋ ଯଥା ଶାସ୍ତ୍ରୀ ମୁଦଙ୍ମୁଖ ।
ବ୍ରହ୍ମାଞ୍ଜଳି କୃତୋଽଧ୍ୟାପ୍ୟୋ ଲଘୁବାସା ଜିତେନ୍ଦ୍ରିୟଃ ।।
ବ୍ରହ୍ମାରମ୍ଭେଽବସାନେ ଚ ପାଦୌ ଗ୍ରାହ୍ୟୌ ଗୁରୋଃ ସଦା ।
ସଂହତ୍ୟ ହସ୍ତାବଧ୍ୟେୟଂ ସହି ବ୍ରହ୍ମାଞ୍ଜଳି ସ୍ମୃତଃ ।।
ବ୍ୟତସ୍ତପାଣିନା କାର୍ଯ୍ୟମୁପସଂଗ୍ରହଣଂ ଗୁରୌଃ ।
ସବ୍ୟେନ ସବ୍ୟଃ ସ୍ପୃଷ୍ଟବ୍ୟୋ ଦକ୍ଷିଣେନ ଚ ଦକ୍ଷିଣଃ ।।
ଅଧ୍ୟେଷ୍ୟମାଣଂ ତୁ ଗୁରୁର୍ନିତ୍ୟକାଳମତନ୍ଦ୍ରିତଃ ।
ଅଧୀଷ୍ୱ ଭୋ ଇତି ବ୍ରୂୟାଦ୍ୱିରମୋଽସ୍ତ୍ୱିତି ଚାରମେତ୍ ।।
ବହ୍ମଣଃ ପ୍ରଣବଂ କୁର୍ଯ୍ୟାଦାଦାବନ୍ତେ ଚ ସର୍ବଦା ।
ସ୍ରବତ୍ୟନୋ କୃଂତଞ୍ଚ ପୂର୍ବଂ ପୁରସ୍ତାଚ ବିଶୀର୍ଯ୍ୟତି ।।
ପ୍ରାକ୍କୁଲାନ୍ପର୍ଯ୍ୟୁପାସୀନଃ ପବିତ୍ରୈଶ୍ଚୈବ ପାବିତଃ ।
ପ୍ରାଣାୟାମୈ ସ୍ତ୍ରୀ ଭିଃ ପୂତସ୍ତତ ଓଁକାରମର୍ହତି ।।

ଅର୍ଥାତ୍–"ଗୁରୁ ଶିଷ୍ୟର ଉପନୟନ କାର୍ଯ୍ୟ ଶେଷକରି ପ୍ରଥମେ ଶୌଚ, ଆଚାର, ଅଗ୍ନିହୋତ୍ର ଏବଂ ସନ୍ଧ୍ୟୋପାସନା ଶିକ୍ଷା ଦେବେ । ଗୁରୁଙ୍କଠାରୁ ଶିକ୍ଷାଲାଭପାଇଁ ଇଚ୍ଛୁକ ଶିଷ୍ୟ ଜିତେନ୍ଦ୍ରିୟ ହୋଇ ଶୁଦ୍ଧ ବସ୍ତ୍ର ପରିଧାନ କରିବ । ନିୟମାନୁଯାୟୀ ଆଚମନ କରିବା ପରେ ଉତ୍ତରାଭିମୁଖ ହୋଇ ବ୍ରହ୍ମାଞ୍ଜଳିପୂର୍ବକ ଗୁରୁଙ୍କ ନିକଟରେ ବସିବ । ତା'ପରେ ଗୁରୁ ଶିଷ୍ୟକୁ ପଢ଼ାଇବେ । ପ୍ରତ୍ୟହ ବେଦା-ରମ୍ଭ ପୂର୍ବରୁ ଓ ପଢ଼ା ଶେଷପରେ ଶିଷ୍ୟ ଭକ୍ତିଭାବରେ ଗୁରୁଙ୍କ ଚରଣ ସ୍ପର୍ଶପୂର୍ବକ ନମସ୍କାର କରିବ । ଦୁଇହାତ ଯୋଡ଼ି ବସି ପଢ଼ାରମ୍ଭ କରିବ । ଏହାକୁ ହିଁ ବ୍ରହ୍ମାଞ୍ଜଳି ବୋଲି କୁହାଯାଏ । ଓଲଟା ହାତଦ୍ୱାରା ଗୁରୁଙ୍କ ବାମ ପାଦକୁ ବାମ-ହାତରେ ଏବଂ ଦକ୍ଷିଣ ପାଦକୁ ଦକ୍ଷିଣ ହାତରେ ସ୍ପର୍ଶ କରିବା ଉଚିତ୍ । ଗୁରୁ ଶିଷ୍ୟକୁ ପଢ଼ାଇବା ଆରମ୍ଭ କରିବା ପୂର୍ବରୁ ଆଳସ୍ୟ ତ୍ୟାଗକରି–" ହେ ଶିଷ୍ୟ-

ପଢ଼ ” ବୋଲି କହିବେ ଏବଂ ପଢ଼ା ଶେଷ କରିବା ପୂର୍ବରୁ 'ଆଜି ଏତିକି ହେଉ' ବୋଲି କହି ପଢ଼ା ବନ୍ଦ କରିବେ । ନିତ୍ୟ ବେଦାଧ୍ୟୟନ ପୂର୍ବରୁ ଓ ପରେ ପ୍ରଣବ (ଓଁକାର) ଉଚ୍ଚାରଣ କରିବା ଉଚିତ୍ । ଏତିକି ନକଲେ ଶିଷ୍ୟ ପଢ଼ିଥିବା ପାଠ ଭୁଲିଯାଏ ଏବଂ ତା'ର କିଛି ମନେ ରହେ ନାହିଁ । ପୂର୍ବ ଦିଗକୁ କୁଶର ଅଗ୍ରଭାଗ ରଖି ତା ଉପରେ ବସିବ । ହାତରେ ପବିତ୍ରୀ ଧାରଣକରି ତିନିଥର ପ୍ରାଣାୟାମ କରିବାପରେ ପବିତ୍ରତାରସହ ଓଁକାର ଉଚ୍ଚାରଣ କରି ବିଦ୍ୟାରମ୍ଭ କରିବ ।” ଏତିକି କହି ଭଗବାନ୍ ମନୁ ଗାୟତ୍ରୀ-ମହାମନ୍ତ୍ର ଜପ ଓ ଇନ୍ଦ୍ରିୟ ସଂଯମ ବିଷୟରେ ବହୁ ଉପଦେଶ ପ୍ରଦାନ କରିଛନ୍ତି ଏବଂ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ତଥା ଶୂଦ୍ର ଆଦି ଚାରି ବର୍ଣ୍ଣର ଆଚରଣ ପଦ୍ଧତିସମ୍ପର୍କରେ ବିଶଦ ବର୍ଣ୍ଣନା କରି କହିଛନ୍ତି । ଏହା ହିଁ ହେଉଛି ପ୍ରାଚୀନ ଶିକ୍ଷା ପ୍ରଣାଳୀର ବିକଶିତ ସ୍ୱରୂପ ।

ପ୍ରାଚୀନ କାଳରେ ଋଷି ବସ୍ତୁର ମୂଳତତ୍ତ୍ୱ, ତା'ର ସ୍ରୋତ ଓ ଆଧାରର ସ୍ତରପର୍ଯ୍ୟନ୍ତ ଗତିକରି ପ୍ରକୃତ ଅବସ୍ଥିତି ସମ୍ପର୍କରେ ଜ୍ଞାନ ହାସଲପାଇଁ ଉଦ୍ୟମ କରୁଥିଲେ । ତାଙ୍କ ମନରେ ଅଧାପନ୍ତରିଆ ଜ୍ଞାନ ହାସଲରେ ସନ୍ତୋଷ ଆସୁ ନ ଥିଲା । ସେମାନଙ୍କର ଶିକ୍ଷାର ଉଦ୍ଦେଶ୍ୟ ଥିଲା–ଏଭଳି ମାନସିକ ସ୍ତରର ନିର୍ମାଣ ବ୍ୟବସ୍ଥା ହେବ, ଯା ଫଳରେ ଶିକ୍ଷାର୍ଥୀ ନିଜେ ସେହି ସମସ୍ତ ପ୍ରାରମ୍ଭିକ ସୂଚନାର ଏକତ୍ରୀକରଣସହିତ ସେଗୁଡ଼ିକୁ ବ୍ୟବସ୍ଥିତ ଢଙ୍ଗରେ ବିଶ୍ଳେଷଣ କରି ଜ୍ଞାନର ଅନୁସନ୍ଧାନରେ ଲିପ୍ତ ରହିବ । ଜ୍ଞାନ ଆହରଣରେ ବାହ୍ୟ ଆଡ଼ମ୍ବରକୁ ସ୍ଥାନ ଦେବ ନାହିଁ କିମ୍ବା ଆଂଶିକ ସଫଳତାରେ ସନ୍ତୁଷ୍ଟ ହେବ ନାହିଁ । ତା'ର ଏକମାତ୍ର ଲକ୍ଷ୍ୟ ହେବ–ଜ୍ଞାନ-ବିଜ୍ଞାନର ଯାହା ମୂଳ ଉତ୍ସ ସେସଂପର୍କରେ ଅଧ୍ୟୟନଶୀଳ ହୋଇ ଜ୍ଞାନ ଆହରଣ ପିପାସାଦ୍ୱାରା ସେହି ମୂଳସ୍ରୋତର ଆବିଷ୍କାର କରିବା । ଋଷିମାନେ ଏକଥା ସ୍ୱୀକାର କରୁଥିଲେ ଯେ ସଂସାରର ସମସ୍ତ ମନୁଷ୍ୟ ହେଉଛନ୍ତି ପରସ୍ପରର ଭାଇଭଉଣୀ ଏବଂ ଏହି ବିଶ୍ୱ ପ୍ରକୃତି ହେଉଛି ମାନବର ପ୍ରକୃତ ମିତ୍ର । ଏଣୁ ଏହି ଆଧାରଭୂମି ଉପରେ ସେମାନେ ଶିକ୍ଷା ପଦ୍ଧତିର କଳ୍ପନା କରିଥିଲେ–କେବଳ ସ୍ୱାର୍ଥହାସଲ ଦୃଷ୍ଟିରୁ ନୁହେଁ । ଆନନ୍ଦ ପ୍ରାପ୍ତିସହିତ ସଚ୍ଚରିତ୍ରତା, ମନୁଷ୍ୟତା ଓ ଆଧ୍ୟାତ୍ମିକତା ଦୃଷ୍ଟିକୋଣରୁ ସମଗ୍ର ଜୀବ-ଜଗତକୁ ନିଜ ଆତ୍ମାସହିତ ସାମଞ୍ଜସ୍ୟ ପ୍ରତିଷ୍ଠା କରାଇବାରେ ଶିକ୍ଷାର୍ଥୀମାନେ ଯେପରି ସମର୍ଥ ହେବେ ସେହିଭଳି ଶିକ୍ଷା ପଦ୍ଧତି ଗ୍ରହଣ କରାଯାଇଥିଲା । ବହୁ ପରୀକ୍ଷା-ନିରୀକ୍ଷାପରେ ଗୁରୁକୁଳ ପ୍ରତିଷ୍ଠାଦ୍ୱାରା ହିଁ ଉପଯୁକ୍ତ ଶିକ୍ଷାଦାନ ସମ୍ଭବ ହେବ ବୋଲି ସେମାନେ ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

ଶିକ୍ଷାଦାନ ପାଇଁ ଗୁରୁକୁଳ ବ୍ୟବସ୍ଥା ଉପଯୋଗୀ ସିଦ୍ଧ ହେବା ମୂଳରେ ରହିଛି ଗୁରୁମାନଙ୍କର କର୍ତ୍ତବ୍ୟ ନିଷ୍ଠା ଓ ଶିଷ୍ୟମାନଙ୍କ ପ୍ରତି ସ୍ନେହ, ମମତା ତଥା ଆନ୍ତରିକତା । ଏହି ଗୁଣଗୁଡ଼ିକର ଅଭାବରେ ଅର୍ଥ ବିନିମୟରେ ଜଣେ ସମ୍ପୂର୍ଣ୍ଣ ଅଜ୍ଞ ବାଳକକୁ ଉପଯୁକ୍ତ ନାଗରିକ ତଥା ଯଥାର୍ଥ ମନୁଷ୍ୟ ରୂପରେ ପରିବର୍ତ୍ତିତ କରାଇଦେବା କଦାପି ସମ୍ଭବ ନୁହେଁ । ଗୁରୁ ଶିଷ୍ୟକୁ ନିଜର ପୁତ୍ରତୁଲ୍ୟ ମନେକରି ତା'ର ସର୍ବାଙ୍ଗୀଣ ଉନ୍ନତିକଳ୍ପେ ନିଜର ସମସ୍ତ ଶକ୍ତି ପ୍ରୟୋଗଦ୍ୱାରା ହିଁ ଏଭଳି ଦୁରୂହ କାର୍ଯ୍ୟ ସମ୍ପନ୍ନ କରୁଥିଲେ । ଗୋଟିଏ ପିଲା ଗୁରୁକୁଳର ଜଣେ ସଦସ୍ୟରୂପେ ପ୍ରବେଶ ଲାଭ କଲାପରେ ତାର ପାରିବାରିକ ଜୀବନର ବିଶେଷତା, ସାମାଜିକ ପରିସ୍ଥିତି ଏବଂ ପରିବେଶ ତା' ଉପରେ କିଭଳି ପ୍ରଭାବ ପକାଇଛି—ଏହି ସମସ୍ତ ବିଷୟରେ ଗୁରୁ ଅତ୍ୟନ୍ତ କୌଶଳର ସହ ସୂକ୍ଷ୍ମ ଅନୁଧ୍ୟାନ କରିବାପରେ ତା'ର ଆମୂଳ ପରିବର୍ତ୍ତନ ଓ ସଂଶୋଧନର ବ୍ୟବସ୍ଥା ଗ୍ରହଣ କରୁଥିଲେ । ଏହି କଷ୍ଟକର କାର୍ଯ୍ୟର ସଫଳତା କେବଳ ଗୁରୁଙ୍କର ଆନ୍ତରିକତା ଉପରେ ହିଁ ନିର୍ଭର କରୁଥିଲା । ତା' ନହେଲେ ପାରିବାରିକ ସ୍ନେହ ଶ୍ରଦ୍ଧାପୂର୍ଣ୍ଣ ବାୟୁମଣ୍ଡଳ ମଧ୍ୟରୁ ଗୋଟିଏ ପିଲାକୁ ଆଣି ବ୍ରହ୍ମଚର୍ଯ୍ୟାଶ୍ରମର କଠୋର ବ୍ୟବସ୍ଥା ମଧ୍ୟରେ ଅନୁଶାସନର ବଶବର୍ତ୍ତୀ କରାଇବା ଏବଂ ତାକୁ ଯଥାର୍ଥ ମାର୍ଗ ଦର୍ଶନଦ୍ୱାରା ନୂତନ ଜୀବନ ପ୍ରଦାନ କରିବା ସହଜ କଥା ନୁହେଁ । ଏହି ସ୍ୱୟଂ ସମ୍ପୂର୍ଣ୍ଣ ବ୍ୟବସ୍ଥା ବଦଳରେ ଗୋଟିଏ ସାଧାରଣ ପାଠ୍ୟକ୍ରମକୁ ଶ୍ରେଣୀବଦ୍ଧ ଗୁଡ଼ିଏ ପିଲାଙ୍କୁ ଘୋଷାଇ ଦେଇ, ପରୀକ୍ଷାକରି ପ୍ରମାଣ ପତ୍ର ଯୋଗାଇ ଦେବାଦ୍ୱାରା ପୂର୍ବୋକ୍ତ ଯୋଗ୍ୟତା ସଂପନ୍ନ ଗର୍ବ ଓ ଗୌରବର ପ୍ରତୀକ ଉପଯୁକ୍ତ ସ୍ନାତକ ସୃଷ୍ଟି କରିବା କଦାପି ସମ୍ଭବ ନୁହେଁ । ଏସଂପର୍କରେ ବହୁ ରାଜନୀତିଜ୍ଞ, ସମାଜପତି, ଶିକ୍ଷାଶାସ୍ତ୍ରୀ ଓ ବୁଦ୍ଧିଜୀବୀ ଚିନ୍ତା କରିବାରେ ଲାଗିଛନ୍ତି । ଯଥା ସମୟରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରୁ ମୁକ୍ତି ଲାଭ କରି ଆମର ନିଜସ୍ୱ ଶିକ୍ଷା ପ୍ରଣାଳୀ ଅନୁସୃତ ହେବ ବୋଲି ଆଶା କରାଯାଉଅଛି ।

ଆମର ଶାସ୍ତ୍ରୀୟ ମତ ହେଲା—'ନାସ୍ତି ବିଦ୍ୟାସମ ଚକ୍ଷୁଃ' । ବିଦ୍ୟାତୁଲ୍ୟ ଚକ୍ଷୁ ଅନ୍ୟ କିଛି ନାହିଁ ପ୍ରାଚୀନ କାଳରେ ଶିକ୍ଷାଦାନ ସମୟରେ ଗୁରୁ ଉପଦେଶ ଦେଉଥିଲେ—"ସତ୍ୟ କହ, ଧର୍ମ ଆଚରଣ କର, ସ୍ୱାଧ୍ୟାୟରେ ପ୍ରମାଦ କରନାହିଁ । କାମ, କ୍ରୋଧକୁ ଜୟକର ।" ଏହିଭଳି ଜୀବନ ଧାରଣର ଉପାଦେୟ ତଥ୍ୟଗୁଡ଼ିକୁ ଗୁରୁ ପ୍ରାଞ୍ଜଳଭାବେ ବୁଝାଇ ଦେଉଥିଲେ ଏବଂ ସେତିକିବେଳୁ ହିଁ ତାଙ୍କ ଦାୟିତ୍ୱର ବୋଝ ବୃଦ୍ଧିପାଇ ଚାଲୁଥିଲା । କାରଣ, ଏହି ବାକ୍ୟଗୁଡ଼ିକୁ

କେବଳ ମୁଖସ୍ଥ କରାଇଦେଇ ଗୁରୁ ନିଶ୍ଚିନ୍ତ ରହୁ ନ ଥିଲେ । ପ୍ରକୃତରେ ଶିଷ୍ୟ ଏଭଳି ଆଚରଣ କରୁଛି କି ନାହିଁ ତାହା ଦେଖିବା ଥିଲା ଗୁରୁଙ୍କର ପରମ ପବିତ୍ର କର୍ତ୍ତବ୍ୟ । ଏହି ପ୍ରଣାଳୀର ଗୋଟିଏ ନମୁନା ହେଉଛି–ଯେତେବେଳେ କୌରବ ଓ ପାଣ୍ଡବ ରାଜକୁମାରମାନଙ୍କୁ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହେଲା, ସେତିକିବେଳୁ ମଝି ମଝିରେ ତାଙ୍କର ପ୍ରଗତି ଲକ୍ଷ୍ୟ କରଯାଉଥାଏ । ଦିନେ ଏ ବିଷୟର ଅନୁସନ୍ଧାନରୁ ଜଣାଗଲା ଯେ, ଯୁଧିଷ୍ଠିର କେବଳ 'ସତ୍ୟଂବଦ' ଏତିକିମାତ୍ର ଶିଖିପାରିଛନ୍ତି । ଏହା ଜାଣି ଧୃତରାଷ୍ଟ୍ର ଦୁଃଖିତ ହେଲେ । ବାରମ୍ବାର ତାଙ୍କ ମନରେ ପ୍ରଶ୍ନ ଉଠିଲା–ଦୀର୍ଘ ଦିନଧରି ଗୁରୁ କ'ଣ ଏହି ଗୋଟିଏ ବାକ୍ୟ ଶିଖାଇଛନ୍ତି ! କିନ୍ତୁ ଯେତେବେଳେ ସେ ଜାଣିପାରିଲେ ଯେ ଯୁଧିଷ୍ଠିର ସେହି ବାକ୍ୟଟିକୁ କେବଳ ମୁଖସ୍ଥ କରି ନାହାନ୍ତି, ପରନ୍ତୁ ତାହା ଜୀବନରେ ପାଳନ କରିବାର ସାମର୍ଥ୍ୟ ହାସଲ କରିଛନ୍ତି–ସେତେବେଳେ ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ଏହା ହିଁ ହେଉଛି ଆମ ପ୍ରାଚୀନ ଶିକ୍ଷାଦାନ ପ୍ରଣାଳୀର ସଫଳ ରୂପାୟନର ନମୁନା ।

ସାଧାରଣତଃ ବାଲ୍ୟକାଳରୁ ହିଁ ଭଗବାନ୍ ବିଶ୍ୱାସରୂପୀ ବୀଜ ପିଲାମାନଙ୍କ ମନରେ ଅଙ୍କୁରିତ , ପୁଲକିତ ଏବଂ ପୁଷ୍ପିତ ହୋଇଥାଏ । ଏଥିପାଇଁ ପିତା, ମାତା ଓ ଗୁରୁଜନମାନଙ୍କ-ଅବଦାନ ଯଥେଷ୍ଟ ରହିଛି । ପିଲାମାନେ ବାଲ୍ୟକାଳରୁ ହିଁ ମାତା, ପିତା ଓ ଗୁରୁଜନମାନଙ୍କଠାରୁ ନମ୍ରତା, ନିଷ୍କପଟତା, ସହନଶୀଳତା ଓ ସତ୍ୟବାଦୀତା ଆଦି ସ୍ୱର୍ଗୀୟ ଗୁଣଗଡ଼ିକ ଆହରଣ କରିଥାନ୍ତି । ପ୍ରକୃତରେ ଅଧ୍ୟାତ୍ମ ଶିକ୍ଷାର ସୁପ୍ରଭବ ଆଚରଣଦ୍ୱାରା ହିଁ ପିଲାଙ୍କ ମନରେ ଗଭୀର ରେଖାପାତ କରିଥାଏ । କିନ୍ତୁ ସେହି ନୀତି ବାକ୍ୟଗୁଡ଼ିକୁ ମୁଖସ୍ଥ କରାଇଦେବାରେ କଦାପି ଉପ୍‌ସିତ ଫଳଲାଭ ହୋଇନଥାଏ । ସବୁ ବିଷୟ ଗୁରୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶିକ୍ଷାଗ୍ରହଣ କରିବା ହିଁ ଉପଯୁକ୍ତ ପନ୍ଥା । ନଚେତ୍ ତାହା ନିଷ୍ଫଳ ହୋଇଥାଏ । ଏହା ହିଁ ହେଉଛି ଦେବତାଙ୍କଦ୍ୱାରା ସମର୍ଥିତ-ଉତ୍କୃଷ୍ଟ ଶିକ୍ଷାଦାନ ବ୍ୟବସ୍ଥା । ଏସମ୍ପର୍କରେ ପ୍ରଚଳିତ ଗୋଟିଏ ସୁନ୍ଦର ଆଖ୍ୟାନ ପ୍ରଣିଧାନଯୋଗ୍ୟ ।

ପ୍ରାଚୀନ କାଳର କଥା । ଗଙ୍ଗାନଦୀ କୂଳରେ ମହର୍ଷି ଭରଦ୍ୱାଜ ଓ ମହର୍ଷି ରୈଭ୍ୟଙ୍କ ଆଶ୍ରମ ରହିଥିଲା । ମହର୍ଷି ରୈଭ୍ୟଙ୍କର ଦୁଇଟି ପୁତ୍ରଥିଲେ । ଜଣକ ନା ହେଉଛି ଅର୍ବାବସୁ ଏବଂ ଅନ୍ୟ ଜଣଙ୍କ ନାମ ହେଉଛି-ପରାବସୁ । ଉଭୟଙ୍କର ରୂପ ଯେମିତି ଗୁଣବି ସେମିତି । କ୍ରମେ ସେମାନେ ପିତାଙ୍କତୁଲ୍ୟ ଶାସ୍ତ୍ରଜ୍ଞ ଓ ବିଦ୍ୱାନ ହୋଇ ଯଥେଷ୍ଟ ସମ୍ମାନ ପ୍ରାପ୍ତ କରିବାକୁ ଲାଗିଲେ । କିନ୍ତୁ

ମହର୍ଷି ଭରଦ୍ୱାଜ ବିଶେଷ ଅଧ୍ୟୟନପ୍ରିୟ ନ ଥିଲେ । ଫଳରେ ରୈଭ୍ୟଙ୍କ ତୁଲ୍ୟ ତାଙ୍କର ଖ୍ୟାତି କିମ୍ବା ସମ୍ମାନ ମଧ୍ୟ ନ ଥିଲା । ତାଙ୍କର ଗୋଟିଏ ମାତ୍ର ପୁତ୍ର ହେଉଛନ୍ତି 'ଯବକ୍ରୀତ'। ପିତାଙ୍କତୁଲ୍ୟ ଯବକ୍ରୀତ ମଧ୍ୟ ଶାସ୍ତ୍ର ଅଧ୍ୟୟନରେ ଆଗ୍ରହୀ ନ ଥିଲେ । କାଳକ୍ରମେ ସେ ଅନୁଭବ କଲେ ଯେ, ମହର୍ଷି ରୈଭ୍ୟ ଏବଂ ତାଙ୍କ ପୁତ୍ରମାନଙ୍କ ସମ୍ମାନ ଅପେକ୍ଷାକୃତ ଅଧିକ ଜଣାପଡ଼ୁଛି । ଏଭଳି ଅନୁଭବ-ଦ୍ୱାରା ତାଙ୍କ ମନରେ ଗଭୀର ଦୁଃଖ ଜାତ ହେଲା । ସେ ଦିନେ ଦୃଢ଼ମନରେ ନିଷ୍ପତ୍ତି କରିନେଲେ ଯେ, ଉଗ୍ର ତପସ୍ୟାଦ୍ୱାରା ସମସ୍ତ ବୈଦିକ ଜ୍ଞାନ ହାସଲ କରିବେ । ଏହି ସିଦ୍ଧାନ୍ତରେ ଅଟଳ ରହି ପଞ୍ଚାଗ୍ନି ପ୍ରଜ୍ୱଳନପୂର୍ବକ ସେ ଘୋର ତପସ୍ୟାରେ ମଗ୍ନ ହୋଇପଡ଼ିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ବରଦେବାଲାଗି ଇନ୍ଦ୍ର ପାଖରେ ଆସି ପହଞ୍ଚିଲେ । ତପସ୍ୟାର କାରଣ ଜାଣିବାପରେ ଇନ୍ଦ୍ର ଉପଦେଶଦେଇ କହିଲେ—"ବିଦ୍ୟାଲାଭପାଇଁ ତୁମର ଆଗ୍ରହ ପ୍ରକୃତରେ ଅତୀବ ପ୍ରଶଂସନୀୟ । କିନ୍ତୁ ତୁମେ ବିପରୀତ ରାସ୍ତାରେ ଗତି କରିବା ଉଦ୍ୟମ କରୁଛ । ଏହାଦ୍ୱାରା ତୁମେ କଦାପି ସଫଳକାମ ହୋଇପାରିବ ନାହିଁ । ଏଣୁ ମୋ କଥା ମାନି ତୁମେ ଏହି ରାସ୍ତା ପରିତ୍ୟାଗ କର ଏବଂ ଉପଯୁକ୍ତ ଗୁରୁଙ୍କ ନିକଟରୁ ଶିକ୍ଷା ଗ୍ରହଣକରି ଯଶସ୍ୱୀ ହୁଅ ।" ଏତିକି କହି ଇନ୍ଦ୍ର ଅନ୍ତର୍ଦ୍ଧାନ ହୋଇଗଲେ । କିନ୍ତୁ ଇନ୍ଦ୍ରଙ୍କ କଥାରେ ଯବକ୍ରୀତଙ୍କର ମନମାନିଲା ନାହିଁ। ସେ ଏଥିରେ ବିଚଳିତ ନ ହୋଇ ପୂର୍ବସଂକଳ୍ପ ମତେ ପୁଣି ଘୋର ତପସ୍ୟାରେ ମନୋନିବେଶ କଲେ । ଇନ୍ଦ୍ର ଏହି ଘଟଣାରେ ବିଚଳିତ ହୋଇ ପୁଣି ଆସି ଯବକ୍ରୀତଙ୍କ ନିକଟରେ ପହଞ୍ଚିଲେ । ସେ ଯବକ୍ରୀତଙ୍କୁ ଉପଦେଶଦେଇ କହିବାକୁ ଲାଗିଲେ—"ହେ ବ୍ରାହ୍ମଣ ! ତୁମେ ଏହି ଦୁରାଗ୍ରହ ତ୍ୟାଗକରି ଗୁରୁଙ୍କ ନିକଟକୁ ଯାଅ ଏବଂ ବିଦ୍ୟାଭ୍ୟାସ କର । ତାହାରି-ଦ୍ୱାରା ତୁମେ ଅବଶ୍ୟ ସଫଳ ହେବ । ଏହି ପ୍ରକାର କାର୍ଯ୍ୟଦ୍ୱାରା ବିଦ୍ୟାହାସଲ ହୁଏ ନାହିଁ । ଯଦି ଗୁରୁମୁଖରୁ ପଢ଼ିବା ବିନା ବିଦ୍ୟା ହାସଲ ହୋଇଯାଏ, ତେବେ ତାହା କଦାପି ସଫଳ ହେବ ନାହିଁ। ଏଣୁ ତୁମେ ତପସ୍ୟା ତ୍ୟାଗ କର ।" ଏତିକି କହି ଇନ୍ଦ୍ର ଚାଲିଗଲେ । ଯବକ୍ରୀତଙ୍କ ମନରେ ଏହିକଥାର କୌଣସି ପ୍ରଭାବ ପଡ଼ିଲା ନାହିଁ । ତାଙ୍କର ଗୋଟିଏ ମାତ୍ର ଅଭିଳାଷ—ସେ ତପସ୍ୟାଦ୍ୱାରା ହିଁ ସମସ୍ତ ବୈଦିକ ଶିକ୍ଷା ହାସଲ କରିବେ । ଶେଷରେ ସେ ନିଜର ଅଙ୍ଗ କାଟି ଅଗ୍ନିରେ ନିକ୍ଷେପ କରିବାସହ ଘୋର ତପସ୍ୟାଲାଗି ସିଦ୍ଧାନ୍ତ ଗ୍ରହଣ କଲେ । ଇନ୍ଦ୍ର ଅନ୍ତରାଳରେ ରହି ଯବକ୍ରୀତଙ୍କର ସମସ୍ତ କାର୍ଯ୍ୟ ଲକ୍ଷ୍ୟ କରୁଥାନ୍ତି । ତାଙ୍କର ଦୃଢ଼ତା ଦେଖି ଇନ୍ଦ୍ର ବିଚଳିତ ହୋଇ ଜଣେ ବୃଦ୍ଧ ବ୍ରାହ୍ମଣ ବେଶରେ ଆସି ଗଙ୍ଗା କୂଳରେ ପହଞ୍ଚିଲେ ।

ସେତେବେଳେ ଯବକ୍ରୀତ ସ୍ନାନ କରିବାଲାଗି ବାହାରିଥାନ୍ତି । ସେ ଗଙ୍ଗା କୂଳରେ ପହଞ୍ଚି ଦେଖିଲେ ଯେ, ଜଣେ ବୃଦ୍ଧ ବ୍ରାହ୍ମଣ ବାଲି ଆଞ୍ଜୁଳାଏ ଲେଖା ନେଇ ଗଙ୍ଗାର ପ୍ରବହମାନ ଧାରାରେ ନିକ୍ଷେପ କରୁଛନ୍ତି । ଏହାଦେଖି ଯବକ୍ରୀତଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ବୃଦ୍ଧଙ୍କ ନିକଟରେ ପହଞ୍ଚି ପଚାରିଲେ– "ମହାଶୟ ! ଆପଣ କାହିଁକି ଏଭଳି କରୁଛନ୍ତି ?"

ବ୍ରାହ୍ମଣ ଉତ୍ତର ଦେଲେ– "ଗଙ୍ଗାର ଅପରପାର୍ଶ୍ୱକୁ ଯିବାପାଇଁ ଲୋକମାନେ ବହୁ ଅସୁବିଧା ଭୋଗ କରୁଛନ୍ତି । ଏଣୁ ମୁଁ ସଂକଳ୍ପ କରିଛି ଯେ, ଯେତେ ସମୟ ଲାଗୁପଛେ ଏଭଳି ବାଲିବନ୍ଧ ଦେଇ ନଦୀ ଉପରେ ଗୋଟିଏ ରାସ୍ତା ତିଆରି କରିଦେବି । ତାହାଦ୍ୱାରା ଲୋକଙ୍କର ଅସୁବିଧା ଦୂର ହୋଇଯିବ ।"

ଏଭଳି ଉତ୍ତରରେ ଯବକ୍ରୀତ ସାମାନ୍ୟ ବିରକ୍ତି ପ୍ରକାଶକରି କହିଲେ– "ଭଗବନ୍ ! ଆପଣ ଏହି ପ୍ରବଳ ପ୍ରବାହମଧ୍ୟରେ ବାଲି ଗଣ୍ଡିଏ ଲେଖାଏ ପକାଇ ପୋଲ ତିଆରି କରିପାରିବେ ନାହିଁ । ଏଣୁ ଏହି ଅବାସ୍ତବ ପରିକଳ୍ପନା ପରିତ୍ୟାଗ କରି ଯେଉଁ ଉପାୟଦ୍ୱାରା ଏହି କାର୍ଯ୍ୟ ହାସଲ ହେବା ସମ୍ଭବ ହେବ, ସେଭଳି କାର୍ଯ୍ୟ ପନ୍ଥା ଗ୍ରହଣ କରନ୍ତୁ ।"

ଯବକ୍ରୀତଙ୍କ ରୁକ୍ଷ ବଚନରେ କ୍ଷୁବ୍ଧ ବ୍ରାହ୍ମଣ ପଛକୁ ବୁଲିପଡ଼ି ଯବକ୍ରୀତଙ୍କୁ ଦେଖି କହିଲେ ତୁମେ ଯଦି କେବଳ ତପସ୍ୟାଦ୍ୱାରା ସମସ୍ତ ବୈଦିକ ଜ୍ଞାନ ହାସଲ କରିଦେଇ ପାରିବ, ତେବେ ମୁଁ କାହିଁକି ବାଲି ପକାଇ ପୋଲ ତିଆରି କରିଦେଇ ନ ପାରିବି ?

ବ୍ରାହ୍ମଣ ପ୍ରକୃତରେ କିଏ, ଏକଥା ଜାଣିବାପାଇଁ ଯବକ୍ରୀତଙ୍କର ଆଉ ବାକି ରହିଲା ନାହିଁ । ସେ ଅତ୍ୟନ୍ତ ନମ୍ରତାରସହିତ କହିବାକୁ ଲାଗିଲେ–"ଦେବରାଜ ! ମୁଁ ବର୍ତ୍ତମାନ ମୋର ଭୁଲ୍ ବୁଝିପାରୁଛି । ଆପଣ ମୋତେ କ୍ଷମା କରନ୍ତୁ ଏବଂ ମୋର ସଫଳତା ପ୍ରାପ୍ତିଲାଗି ଆଶୀର୍ବାଦ ପ୍ରଦାନ କରନ୍ତୁ ।"

ଇନ୍ଦ୍ର ସନ୍ତୁଷ୍ଟ ହୋଇ ସଫଳତା ପ୍ରାପ୍ତିର ଆଶୀର୍ବାଦ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ଯବକ୍ରୀତ ସ୍ୱାଭାବିକ ପନ୍ଥାର ଆଶ୍ରୟ ଗ୍ରହଣଦ୍ୱାରା ଅଭିଳାଷ ପୂର୍ଣ୍ଣଲାଗି ଗୁରୁଙ୍କର ସନ୍ଧାନରେ ବାହାରିପଡ଼ିଲେ ।

ଶିକ୍ଷାଦ୍ୱାରା ଜୀବନ-ନିର୍ମାଣର ଅର୍ଥ ହେଉଛି–ବିଦ୍ୟାର୍ଥୀର ସର୍ବାଙ୍ଗୀଣ ଉନ୍ନତି ଏବଂ ଅଖଣ୍ଡ ବ୍ୟକ୍ତିତ୍ୱର ବିକାଶ । ତେଣୁ ଜ୍ଞାନ ମନ୍ଦିରରେ ପ୍ରବେଶ କରିବା ପୂର୍ବରୁ ବିଦ୍ୟାର୍ଥୀ ମନରେ ପ୍ରାରମ୍ଭିକ ଶୁଦ୍ଧ ସଂସ୍କାର ସୃଷ୍ଟି ହେବା ଆବଶ୍ୟକ ।

ଏହିଭଳି ଉପଯୁକ୍ତ ପନ୍ଥା ଗ୍ରହଣଦ୍ୱାର ସାଧନା ଫଳରେ ହିଁ ଗୁରୁଙ୍କ କୃପା ଲାଭ ହୁଏ ଏବଂ କାମନା ସିଦ୍ଧ ହୋଇଥାଏ । ସାଧାରଣତଃ ଗୁରୁଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ବିନା ସଫଳତା ଆଶା କରିବା ଆକାଶ କୁସୁମ ସଂଗ୍ରହ କରିବା ସଙ୍ଗେ ସମାନ । ଏସମ୍ପର୍କରେ ଦେବର୍ଷି ନାରଦଙ୍କ ଉକ୍ତି ହେଉଛି—

ପୁସ୍ତକ ପ୍ରତ୍ୟାଧୀତଂ ହି ନାଧୀତଂ ଗୁରୁସନ୍ନିଧୌ ।
ଭ୍ରାଜତେ ନ ସଭାମଧ୍ୟେ ଜାରଗର୍ଭ ଇବସ୍ତ୍ରୀୟଃ ।।

ଅର୍ଥାତ୍—"ଗୁରୁଙ୍କ ସାନ୍ନିଧ୍ୟ ଲାଭ ବିନା ପୁସ୍ତକ ଗୁଡ଼ିଏ ଅଧ୍ୟୟନଦ୍ୱାର ହାସଲ କରାଯାଇଥିବା ବିଦ୍ୟା—ସ୍ତ୍ରୀର ଜାର ଗର୍ଭତୁଲ୍ୟ—ସଭାମଧ୍ୟରେ ଶୋଭା ପାଏ ନାହିଁ ।"

ବେଦ, ଉପନିଷଦ, ପୁରାଣ ଆଦି ଆମର ସମସ୍ତ ପ୍ରାଚୀନ ସାହିତ୍ୟ ଗୁରୁଭକ୍ତି-ମୂଳକ ବିଷୟ ସମ୍ଭାରରେ ପରିପୂର୍ଣ୍ଣ ହୋଇ ରହିଅଛି । ସେଗୁଡ଼ିକର ଅଧ୍ୟୟନ ଓ ଅନୁଶୀଳନ ନ ହେବାଦ୍ୱାର ଆମ ବୁଦ୍ଧିର ବିକାଶମାର୍ଗ ଅବରୁଦ୍ଧ ହୋଇପଡ଼ିଛି । ଏଠାରେ ସଂସାରର ପ୍ରଥମ ଗୁରୁ, ସମସ୍ତ ବିଦ୍ୟାର ଆଦି ପ୍ରବର୍ତ୍ତକ ଅକର୍ମକର୍ମଦାୟକ ଶ୍ରୀ ଦକ୍ଷିଣାମୂର୍ତ୍ତି ଭଗବାନ୍ ସଦାଶିବଙ୍କ ପ୍ରତି ନିବେଦନ କରାଯାଇଥିବା ପ୍ରାର୍ଥନାର କିଛି ଅଂଶ ପ୍ରଦତ୍ତ ହେଲା—

ବିଶ୍ୱଂ ଦର୍ପଣଦୃଶ୍ୟମାନନଗରୀତୁଲ୍ୟଂ.........ନିଜାନ୍ତର୍ଗତଂ
ପଶ୍ୟନାତ୍ମନି ମାୟୟା ବହିରିବୋଦ୍ଭୂତଂ ଯଥା ନିଦ୍ରୟା ।
ଯଃ ସାକ୍ଷାତ୍ କୁରୁତେ ପ୍ରବୋଧସମୟେ ସ୍ୱାତ୍ମାନମେବାଦ୍ୱୟଂ
ତସ୍ମୈ ଶ୍ରୀ ଗୁରୁମୂର୍ତ୍ତୟେ ନମଇଦଂ.......ଶ୍ରୀ ଦକ୍ଷିଣା ମୂର୍ତ୍ତୟେ ।।୧।।

ଅର୍ଥାତ୍—ଯେ ନିଜ ହୃଦୟସ୍ଥିତ ଦର୍ପଣରେ ଦୃଶ୍ୟମାନ ନଗରୀ ସଦୃଶ ବିଶ୍ୱକୁ ନିଦ୍ରାସମୟରେ ସ୍ୱପ୍ନ ଦେଖିବାଭଳି,ମାୟାଦ୍ୱାର ବାହାରେ ପ୍ରକଟ ହେବାପରି ଆତ୍ମାରେ ଦର୍ଶନକରି ଜ୍ଞାନ ହେବାପରେ ଅଥବା-ନିଦ୍ରାଭଙ୍ଗପରେ ନିଜର ଅଦ୍ୱିତୀୟ ଆତ୍ମାକୁ ସାକ୍ଷାତ୍କାର କରିଥାନ୍ତି, ସେହି ଶ୍ରୀଗୁରୁସ୍ୱରୂପ-ଶ୍ରୀ ଦକ୍ଷିଣାମୂର୍ତ୍ତିଙ୍କୁ ମୋର ନମସ୍କାର ।

ବୀଜସ୍ୟାନ୍ତରିବାଙ୍କୁରେ ଜଗଦିଦଂ ପ୍ରାଙ୍ନିର୍ବିକଳ୍ପଂ ପୁନଃ-
ର୍ମାୟା କଳ୍ପିତ ଦେଶକାଳକଳନା ବୈଚିତ୍ର୍ୟ ଚିତ୍ରୀକୃତମ୍ ।
ମାୟାବୀବ ବିଜୃମ୍ଭୟତ୍ୟପି ମହାଯୋଗୀବ ଯଃ ସ୍ୱେଚ୍ଛୟା
ତସ୍ମୈ ଶ୍ରୀ ଗୁରୁମୂର୍ତ୍ତୟେ ନମ ଇଦଂ ଶ୍ରୀ ଦକ୍ଷିଣାମୂର୍ତ୍ତୟେ ।।୨।।

ଅର୍ଥାତ୍-ମହାଯୋଗୀତୁଲ୍ୟ ଯେ ନିଜର ଇଚ୍ଛାରେ ସୃଷ୍ଟି ପୂର୍ବରୁ ନିର୍ବି-କଳ୍ପରୂପେସ୍ଥିତ ଏହି ଜଗତକୁ ବୀଜ ମଧ୍ୟରେ ଥିବା ଅଙ୍କୁର ସଦୃଶ-ମାୟାଦ୍ୱାରା କଳ୍ପିତ ଦେଶ,କାଳ ଓ ଧାରଣାର ବିଚିତ୍ରତାରେ ଚିତ୍ରିତ କରିଥିଲେ ତଥା ମାୟାବୀଭଳି–ହାଇମାରିବା ଦେଖା ଯାଉଥିବା ସେହି ଶ୍ରୀଗୁରୁସ୍ୱରୂପ ଶ୍ରୀ ଦକ୍ଷିଣା ମୂର୍ତ୍ତିଙ୍କୁ ମୋର ନମସ୍କାର ।।୨।।

ଯସ୍ୟୈବ ସ୍ଫୁରଣଂ ସଦାତ୍ମକମଶତ୍କଳ୍ପାର୍ଥକଂ ଭସତେ
ସାକ୍ଷାତ୍ ତତ୍ତ୍ୱମସୀତି ବେଦବଚସା ଯୋ ବୋଧୟତ୍ୟାଶ୍ରିତାନ୍
ଯତ୍ସାକ୍ଷାତ୍ କରଣାଦ୍ ଭବେନ୍ନ ପୁନରବୃତ୍ତିର୍ଭବାମ୍ଭୋନିଧୌ
ତସ୍ମୈ ଶ୍ରୀ ଗୁରୁମୂର୍ତୟେ ନମ ଇଦଂ ଶ୍ରୀ ଦକ୍ଷିଣାମୂର୍ତୟେ ।। ୩ ।।

ଅର୍ଥାତ୍–ଯାହାର ସଦାତ୍ମକ ସ୍ଫୁରଣହିଁ ଅସତ୍ ତୁଲ୍ୟ ଭସିତ ହୋଇଥାଏ, ଯେ ନିଜର ଆଶ୍ରିତମାନଙ୍କୁ 'ସାକ୍ଷାତ୍ ତତ୍ତ୍ୱମସି' ଅର୍ଥାତ୍-"ତୁମେ ସାକ୍ଷାତ୍ ସେହି ବ୍ରହ୍ମ ହିଁ ଅଟ"–ଏହି ବେଦବାକ୍ୟଦ୍ୱାରା ଜ୍ଞାନ ପ୍ରଦାନ କରିଥାନ୍ତି ତଥା ଯାହାଙ୍କର ସାକ୍ଷାତ୍କାର ପରେ ପୁଣି ଭବସାଗର ମଧ୍ୟକୁ ଆବାଗମନ ହୁଏ ନାହିଁ, ସେହି ଶ୍ରୀ ଗୁରୁସ୍ୱରୂପ ଶ୍ରୀ ଦକ୍ଷିଣାମୂର୍ତ୍ତିଙ୍କୁ ମୋର ନମସ୍କାର ।। ୩ ।।

ନା ନା ଛିଦ୍ର ଘଟୋଦରସ୍ଥିତ ମହା ଦୀପ ପ୍ରଭଭସ୍ୱରଂ
ଜ୍ଞାନ ଯସ୍ୟ ତୁ ଚକ୍ଷୁରଦିକରଣଦ୍ୱାର ବହିଃ ସ୍ପନ୍ଦତେ
ଜାନାମୀତି ତମେବ ଭତମନୁଭତ୍ୟେନସ୍ତମସ୍ତଂ ଜଗତ୍
ତସ୍ମୈ ଶ୍ରୀ ଗୁରୁମୂର୍ତୟେ ନମ ଇଦଂ ଶ୍ରୀଦକ୍ଷିଣାମୂର୍ତୟେ ।। ୪ ।।

ଅର୍ଥାଚ–ଅନେକ ଛିଦ୍ରଯୁକ୍ତ ଘଟମଧ୍ୟରେ ଥିବା ବିଶାଳ ଦୀପକର ଉଜ୍ଜ୍ୱଳ–ପ୍ରଭତୁଲ୍ୟ ଜ୍ଞାନ ଯାହାଙ୍କ ନେତ୍ର ଆଦି ଇନ୍ଦ୍ରିୟମାନଙ୍କଦ୍ୱାର ବାହାରେ ପ୍ରସାରିତ ହେବାକୁ ଲଗେ ତଥା ମୋ ବିସ୍ତରରେ-ସେହି ପ୍ରକାଶ ଫଳରେ ହିଁ ଏହି ସମ୍ପୂର୍ଣ୍ଣ ଜଗତ ପ୍ରକାଶିତ ହୋଇଥାଏ, ସେହି ଶ୍ରୀଗୁରୁ ସ୍ୱରୂପ ଭଗବାନ୍ ଶ୍ରୀ ଦକ୍ଷିଣାମୂର୍ତ୍ତିଙ୍କୁ ମୁଁ ନମସ୍କାର କରୁଅଛି ।। ୪ ।।

ଦେହଂ ପ୍ରାଣମପୀନ୍ଦ୍ରିୟାଣ୍ୟପି ଚଳାଂ ବୁଦ୍ଧିଂ ଚ ଶୂନ୍ୟଂ ବିଦୁଃ
ସ୍ତୀବାଳାନ୍ଧ ଜଡୋପମାସ୍ତ୍ୱହମିତି ଭ୍ରାନ୍ତା ଭୃଶଂ ବାଦିନଃ
ମାୟାଶକ୍ତିବିଳାସ କଳ୍ପିତମହା ବ୍ୟାମୋହସଂହାରିଣେ
ତସ୍ମୈ ଶ୍ରୀ ଗୁରୁମୂର୍ତୟେ ନମ ଇଦଂ ଶ୍ରୀଦକ୍ଷିଣାମୂର୍ତୟେ ।। ୫ ।।

ଅର୍ଥାତ୍—ଭ୍ରମିତ ବିଚାର, ବହୁବାଦୀ, ଶୂନ୍ୟବାଦୀ, ବୌଦ୍ଧ ଆଦି ଦେହ, ପ୍ରାଣ, ଇନ୍ଦ୍ରିୟଗଣ ତଥା ତୀବ୍ର ବୁଦ୍ଧିକୁ ମଧ୍ୟ ସ୍ତ୍ରୀ, ବାଳକ, ଅନ୍ଧ ଏବଂ ଜଡ଼ତୁଲ୍ୟ ଶୂନ୍ୟ ବୋଲି ଗ୍ରହଣକରି ଅହଂକୁ ହିଁ ପ୍ରାଧାନ୍ୟ ଦେଇଥାନ୍ତି, ଏଭଳି ମାୟାଶକ୍ତିର ବିଳାସଦ୍ୱାରା କଳ୍ପିତ ମହାମୋହ ସଂହାରକର୍ତ୍ତା ଶ୍ରୀ ଗୁରୁସ୍ୱରୂପ ଶ୍ରୀ ଦକ୍ଷିଣାମୂର୍ତ୍ତିଙ୍କୁ ମୋର ନମସ୍କାର ।। ୫ ।।

ବଟବିଟପି ସମୀପେ ଭୂମିଭାଗେ ନିଷଣ୍ଣଂ
ସକଳମୁନିଜନାନାଂ ଜ୍ଞାନଦାତାରମାରାତ୍ ।
ତ୍ରିଭୁବନ ଗୁରୁମୀଶଂ ଦକ୍ଷିଣାମୂର୍ତ୍ତିଦେବଂ
ଜନନ ମରଣଦୁଃଖଛେଦଦକ୍ଷଂ ନମାମି ।। ୧୧ ।।

ଅର୍ଥାତ୍—ବଟ ବୃକ୍ଷ ସମୀପରେ ଭୂମିଭାଗ ଉପରେ ବିରାଜିତ, ନିକଟରେ ବସିଥିବା ମୁନିଜନମାନଙ୍କୁ ଜ୍ଞାନ ପ୍ରଦାନକାରୀ, ଜନ୍ମ-ମରଣରୂପୀ ଦୁଃଖ ଦୂର କରିବାରେ ପ୍ରବୀଣ, ତ୍ରିଭୁବନର ଗୁରୁ ଏବଂ ସ୍ୱାମୀ ସେହି ଶ୍ରୀ ଗୁରୁସ୍ୱରୂପ ଶ୍ରୀ ଦକ୍ଷିଣାମୂର୍ତ୍ତିଙ୍କୁ ମୋର ନମସ୍କାର ।। ୧୧ ।।

ଚିତ୍ରଂ ବଟତରୋର୍ମୂଳେ ବୃଦ୍ଧାଃ ଶିଷ୍ୟା ଗୁରୁର୍ଯୁବା ।
ଗୁରୋସ୍ତୁ ମୌନଂ ବ୍ୟାଖ୍ୟାନଂ ଶିଷ୍ୟାସ୍ତୁ ଛିନ୍ନସଂଶୟା ।। ୧୨ ।

ଅର୍ଥାତ୍—ଆଶ୍ଚର୍ଯ୍ୟର ବିଷୟ ହେଉଛି ଯେ, ସେହି ବଟବୃକ୍ଷ ନିକଟରେ ତଳେ ବସିଥିବା ସମସ୍ତ ଶିଷ୍ୟ ହେଉଛନ୍ତି ବୃଦ୍ଧ ଏବଂ ଗୁରୁ ହେଉଛନ୍ତି ଯୁବକ । ଗୁରୁଙ୍କ ବ୍ୟାଖ୍ୟାନ ମଧ୍ୟ ମୌନ ଭାଷାରେ । କିନ୍ତୁ ତଦ୍ୱାରା ଶିଷ୍ୟମାନଙ୍କର ସମସ୍ତ ସଂଶୟ ନଷ୍ଟ ହୋଇଯାଉଛି ।। ୧୨ ।।

ପ୍ରାଚୀନ କାଳରେ ଗୁରୁଙ୍କୁ ସର୍ବଶ୍ରେଷ୍ଠ ଜ୍ଞାନ ଦାନକର୍ତ୍ତା, ଅଜ୍ଞାନାନ୍ଧକାର ଦୂରକାରୀ ଏବଂ ସାକ୍ଷାତ୍ ଭଗବାନ୍‌ସ୍ୱରୂପ ବୋଲି ଗ୍ରହଣ କରାଯାଉଥିଲା । ତାଙ୍କୁ ସେବାଦ୍ୱାରା ସନ୍ତୁଷ୍ଟକରି ତାଙ୍କର ଆଶୀର୍ବାଦ କାମନା କରିବା ଯୋଗୁଁ ତାଙ୍କରି ଦୟାରୁ ସତ୍ୟ ଆଚରଣ, ଗୁରୁଭକ୍ତି, ଧର୍ମରକ୍ଷା, ଈଶ୍ୱର ବିଶ୍ୱାସ, ସତ୍‌ଶିକ୍ଷା ଏବଂ ନୀତି ନିପୁଣତା ଆଦି ଗୁଣମାନ ଲାଭ କରାଯାଇପାରୁଥିଲା । ସାକ୍ଷାତ୍ ଶିବସ୍ୱରୂପୀ ଭଗବାନ୍ ଶଙ୍କରାଚାର୍ଯ୍ୟ କହୁଛନ୍ତି—ସୁନ୍ଦର ଶରୀର, ସୁନ୍ଦରୀ ସ୍ତ୍ରୀ, ଅଦ୍ଭୁତ ବିଶାଳ ଯଶ, ପୁତ୍ର-ପୌତ୍ରାଦି ସକଳ କୁଟୁମ୍ବ, ବନ୍ଧୁ, ଗୃହ ପ୍ରଚୁର ଧନ ଆଦି ସମସ୍ତ ଉପକରଣ ଯଥେଷ୍ଟ ମାତ୍ରାରେ ପ୍ରାପ୍ତ ହୋଇଥିଲେ ହେଁ ଯଦି ଶ୍ରୀ ଗୁରୁଙ୍କ

ଚରଣ କମଳରେ ମନ ଲଗିପାରିଲା ନାହିଁ ତେବେ ଏହି ସମସ୍ତ ସୃଷ୍ଟି ସଂପତ୍ତିର କ'ଣ ପ୍ରୟୋଜନ ! କ'ଣ ପ୍ରୟୋଜନ !! କ'ଣ ପ୍ରୟୋଜନ !!! ଏଭଳି ସ୍ୱର୍ଗୀୟ ଚିନ୍ତାଧାରା ଓ ସୁବ୍ୟବସ୍ଥିତ ତଥା ବହୁ ପରୀକ୍ଷିତ ଶିକ୍ଷା ପ୍ରଣାଳୀକୁ ପୁରୁଣା-କାଳିଆ, କୁସଂସ୍କାରପୂର୍ଣ୍ଣ ବୋଲି ତାଚ୍ଛଲ୍ୟ ପ୍ରଦର୍ଶନ ଫଳରେ ଆଜି ଆମ ଦେଶ ମୂଳ ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ଅପସଂସ୍କୃତିର ଶିକାର ହୋଇପଡ଼ିଛି । ଏହାର ଆଶୁ ପରିବର୍ତ୍ତନରେ ହିଁ ଦେଶର ମଙ୍ଗଳ । ଆମର ଆର୍ଷ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଧର୍ମ ବା ନୀତିରକ୍ଷା ବିଷୟକ ବହୁ ଶିକ୍ଷାପ୍ରଦ ବିଷୟ ପରିପୂର୍ଣ୍ଣ ହୋଇ ରହିଛି । ସେଗୁଡ଼ିକର ସାଗ୍ରହ ଅନୁଶୀଳନ ଓ ପାଳନଦ୍ୱାରା ହିଁ ମାନବ ଜୀବନର ସଫଳତା ନିର୍ଭର କରିଥାଏ । ଧର୍ମରକ୍ଷାସଂପର୍କରେ ମହର୍ଷି ବ୍ୟାସଦେବ କହୁଛନ୍ତି

ଧର୍ମଏବ ହତୋହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ ।
ତସ୍ମାଦ୍ଧର୍ମ ନ ତ୍ୟଜାମି ମାନୋଧର୍ମୋ ହତୋଽବଧୀତ ।।
(ମହାଭାରତ ବନପର୍ବ- ୩୧୩-୧୨୮)

ଅର୍ଥାତ୍—"ଧର୍ମ ଆହତ ବା ପରିତ୍ୟକ୍ତ ହେବା ଫଳରେ ମନୁଷ୍ୟକୁ ନଷ୍ଟ କରିଦେଇଥାଏ । ଯଦି ରକ୍ଷିତ ବା ପାଳିତ ହୁଏ ତେବେ ତାହା ମନୁଷ୍ୟକୁ ରକ୍ଷା-କରିଥାଏ । ଅତଃ ଧର୍ମ ଆମକୁ ବଧକରି ନଦେଉ ଏହି ଭୟରେ ମୁଁ ଧର୍ମ ତ୍ୟାଗ କରୁନାହିଁ ।"

ଅଭିମାନ, ଅସତ୍ୟ ଭାଷଣ, ଆତ୍ମରହୀନତା, ଈର୍ଷ୍ୟା, ଦ୍ୱେଷ ଓ ଭେଦଭାବ ଆଚରଣମାନ ପରିତ୍ୟାଗପୂର୍ବକ ସର୍ବଦା ନିଜର କର୍ତ୍ତବ୍ୟ ପାଳନ କରିଯିବା ହିଁ ହେଉଛି ମନୁଷ୍ୟତା । ଲୋକୋପକାର, ମାତୃଭୂମିର ସୁରକ୍ଷା, ଧର୍ମାଚରଣ, ସଂସ୍କୃତିର ଧାରା ଅବ୍ୟାହତ ରଖିବାପାଇଁ ଉଦ୍ୟମ, ସମାଜର ଦୋଷଦୁର୍ବଳତା ଦୂରୀକରଣଦ୍ୱାରା ସମଗ୍ର ମାନବ ଜାତିର ସେବାରେ ନିଜକୁ ସମର୍ପଣ କରିଦେବା ହିଁ ହେଉଛି ବ୍ରହ୍ମସାକ୍ଷାତ୍କାରର ସର୍ବୋତ୍ତମ ଉପାୟ । ଏସଂପର୍କରେ ରାମାୟଣର ଅଯୋଧ୍ୟା କାଣ୍ଡରେ କୁହାଯାଇଛି—

ସତ୍ୟମେବେଶ୍ୱରୋ ଲୋକେ ସତ୍ୟେ ଧର୍ମ ସଦାଶ୍ରିତଃ ।
ସତ୍ୟମୂଳାନି ସର୍ବାଣି ସତ୍ୟାନ୍ନାସ୍ତି ପରଂ ପଦମ୍ ।।
ଦତ୍ତମିଷ୍ଟଂ ହୁତଂ ଚୈବ ତପ୍ତାନି ଚ ତପାଂସି ଚ ।
ବେଦାଃ ସତ୍ୟପ୍ରତିଷ୍ଠାନାସ୍ତସ୍ମାତ୍ ସତ୍ୟ ପରୋଭବେତ୍ ।।
(ଅଯୋଧ୍ୟା° ୧୧୯-୧୩,୧୪)

ଅର୍ଥାତ୍—"ଈଶ୍ୱର ହିଁ ହେଉଛନ୍ତି ସତ୍ୟ । ସର୍ବଦା ସତ୍ୟର ଆଧାରରେ ହିଁ ଧର୍ମର ସ୍ଥିତି ସମ୍ଭବ ହୋଇଥାଏ । ସତ୍ୟ ହେଉଛି ସବୁରି ମୂଳ ତତ୍ତ୍ୱ । ସତ୍ୟଠାରୁ ବଳି ଅନ୍ୟ କୌଣସି ଉତ୍ତମ ଗତି ଆଉ ନାହିଁ । ଦାନ, ଯଜ୍ଞ, ହୋମ, ତପସ୍ୟା ଏବଂ ବେଦ—ଏହି ସମସ୍ତର ସତ୍ୟ ହିଁ ହେଉଛି ପରମ ଆଶ୍ରୟ । ଏଣୁ ସର୍ବଦା ସମସ୍ତଙ୍କର ସତ୍ୟପରାୟଣ ହେବା ହିଁ ସର୍ବୋତ୍କୃଷ୍ଟ ପନ୍ଥା ।" ଏହା ହିଁ ହେଉଛି ଆମ ପ୍ରାଚୀନ ଶିକ୍ଷାର ମୌଳିକତା । ସର୍ବଦା ଏହାର ମନନ ଓ ଆଚରଣଦ୍ୱାରା ମନୁଷ୍ୟ ମନରୁ ସମସ୍ତ ମନ୍ଦ ଭାବନା ଦୂର ହୋଇଯାଏ ଏବଂ କାର୍ଯ୍ୟ କାରଣ ସ୍ୱରୂପ ପରାତ୍ପର ପରଂବ୍ରହ୍ମଙ୍କ ସାକ୍ଷାତ୍କାରଦ୍ୱାରା ହୃଦୟର ଅବିଦ୍ୟା ରୂପକ ଗ୍ରନ୍ଥି ଛିନ୍ନିଯାଏ ।

ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପରମ୍ପରାରେ 'ଆଚାର୍ଯ୍ୟ ବିଦ୍ୟାରଣ' ହେଉଛନ୍ତି ଜଣେ ଶ୍ରେଷ୍ଠ ବିଦ୍ୱାନ୍ । ଆଚାର୍ଯ୍ୟଙ୍କ ଲିଖିତ—ନୃସିଂହ ତାପିନୀ ଆଦି ଅସମ୍ପୂର୍ଣ୍ଣ ସାହିତ୍ୟକୃତିମାନଙ୍କ ଭାଷ୍ୟ ରଚନାଦ୍ୱାରା ସେଗୁଡ଼ିକୁ ସମ୍ପୂର୍ଣ୍ଣ କରିବାର ବିଦ୍ୟାରଣଙ୍କ ଅବଦାନ ସର୍ବସ୍ୱୀକୃତ । ଆଚାର୍ଯ୍ୟ ବିଦ୍ୟାରଣ୍ୟ ଥିଲେ ଜଣେ ବିଶେଷ ପ୍ରତିଭା ସଂପନ୍ନ ଧର୍ମାଚାର୍ଯ୍ୟ । ସେ ପ୍ରାୟ ପଚାଶଗୋଟି ଶିକ୍ଷାପ୍ରଦ ତଥା ଉପାଦେୟ ଗ୍ରନ୍ଥ ରଚନା କରିଯାଇଛନ୍ତି । ସେହି ଗ୍ରନ୍ଥମାନଙ୍କ ମଧ୍ୟରେ ପଞ୍ଚଦଶୀ, ବିବରଣ—ପ୍ରମେୟ ସଂଗ୍ରହ ଓ ଜୀବନ୍ମୁକ୍ତି ବିବେକ ଆଦି ଶ୍ରେଷ୍ଠ ଗ୍ରନ୍ଥରୂପେ ଖ୍ୟାତିପ୍ରାପ୍ତ ।

ସତ୍ ଶିକ୍ଷାସଂପର୍କରେ ତାଙ୍କର ମତ ହେଲା—ବୁଦ୍ଧି ଏବଂ ସତ୍ ଶିକ୍ଷାର ସହଯୋଗଦ୍ୱାରା ହିଁ ଶୁଦ୍ଧଜ୍ଞାନ ପ୍ରାପ୍ତ ହୋଇଥାଏ । ଶୁଦ୍ଧ ଜ୍ଞାନ ଲାଭ ହେବାପରେ ହିଁ—'ନିତ୍ୟ ଅନିତ୍ୟ' ଆଦି ବିବେଚନଦ୍ୱାରା ସଂସାରର ସ୍ୱରୂପ ଚିନ୍ତା କରିବା ସମ୍ଭବ ହୋଇଥାଏ । ସଂସାରର ନିଃସାରତା ଜାଣିପାରିବା ଯୋଗୁଁ ସାର ଓ ସୁଖମୟ ବସ୍ତୁ ଖୋଜିବା ଅବସରରେ ପରମାତ୍ମାଙ୍କ ପ୍ରତି ମନୁଷ୍ୟ ଆକୃଷ୍ଟ ହୋଇଥାଏ । ଏହି ଭାବନାର ତୀବ୍ରତା ଫଳରେ ପରମାତ୍ମାଙ୍କ ସତ୍ତା ଅନୁଭବଦ୍ୱାରା ହୃଦୟଗ୍ରନ୍ଥି ସ୍ୱରୂପ ଅବିଦ୍ୟା-ବାସନାଜାଲ, କାମନା, ସଂଶୟ ଓ ଅଶିକ୍ଷାର ଅନ୍ତ ହୋଇ ଜ୍ଞାନୋଦୟ-ଦ୍ୱାରା ଜୀବନ୍ମୁକ୍ତ ଅବସ୍ଥା ପ୍ରାପ୍ତ ହୁଏ । ସେତେବେଳେ ମନରେ ପ୍ରଶ୍ନଉଠେ—ହୃଦୟସ୍ଥିତ ଆତ୍ମା ପ୍ରକୃତରେ କର୍ତ୍ତା ନା ସାକ୍ଷୀରୂପରେ ସ୍ଥିତ ? ଯଦି ସାକ୍ଷୀ, ତେବେ ସେ ପରଂବ୍ରହ୍ମ ନା ନାହିଁ ? ଏହିଭଳି ବାରମ୍ବାର ମନରେ ସ୍ପୃଷ୍ଟି ହେଉ-

ଥିବା ସଂଶୟଗୁଡ଼ିକର ନିରାକରଣ ହେବାପରେ ହିଁ ଆତ୍ମାରେ ପରମାତ୍ମାଙ୍କର ଦର୍ଶନ ଲାଭ ହୋଇ ଦ୍ରଷ୍ଟାକୁ ଦିବ୍ୟଜ୍ଞାନ, ବିଶୁଦ୍ଧ ବୋଧଶକ୍ତି, କୃତାର୍ଥତା ଏବଂ ପରମାନନ୍ଦ ପ୍ରାପ୍ତ ହୋଇଥାଏ । ଏସଂପର୍କରେ ଯୋଗବାଶିଷ୍ଠର 'ଜୀବନ୍ମୁକ୍ତ-ବିବେକ' ପ୍ରକରଣରେ କୁହାଯାଇଛି–

ଆବାଲ୍ୟାଦଲମଭ୍ୟସ୍ତୈଃ ଶାସ୍ତ୍ର ସତ୍‌ସଙ୍ଗମାଦିଭିଃ ।
ଗୁଣୈଃ ପୁରୁଷଯତ୍ନେନ ସୋର୍ଥଃ ସଂପାଦ୍ୟତେ ହିତଃ ॥

ଅର୍ଥାତ୍–ବାଲ୍ୟକାଳରୁ ହିଁ ସତ୍‌ଶାସ୍ତ୍ର ଅଧ୍ୟୟନ ଏବଂ ଅଭ୍ୟାସଫଳରେ ସଦ୍‌ଗୁଣ, ବୁଦ୍ଧି ଓ ସତ୍‌ସଙ୍ଗ ଲାଭଫଳରେ ଏହି କଲ୍ୟାଣକାରୀ ଶ୍ରେଷ୍ଠ ବସ୍ତୁ ପ୍ରାପ୍ତ ହୋଇଥାଏ । ଶିକ୍ଷା ଓ ଜ୍ଞାନାଭ୍ୟାସଦ୍ୱାରା ଚିତ୍ତର ଅବିଦ୍ୟା, ବିପର୍ଯ୍ୟୟ, କ୍ଳେଶ, କର୍ତ୍ତୃତ୍ୱ ଏବଂ ଭୋକ୍ତୃତ୍ୱ ଆଦି ଦୋଷଗୁଡ଼ିକର ନିବୃତ୍ତି ଘଟିବା ଅବସ୍ଥାକୁ ହିଁ ଜୀବନ୍ମୁକ୍ତି କୁହାଯାଏ । ଅତଃ ଏହାଦ୍ୱାରା ପୁରୁଷାର୍ଥ–ସଂପାଦନ ଯୋଗୁଁ ପରମ ଶ୍ରେୟ ଲାଭକରିବା ହିଁ ବାସ୍ତବିକ ଶିକ୍ଷା ଏବଂ ବୁଦ୍ଧିମତ୍ତା ବୋଲି ଗ୍ରହଣ କରି ନିଆଯାଇଛି ।

ଜୀବନରେ ଶିକ୍ଷା ଏବଂ ସଂସ୍କୃତିର ସଦ୍ ବ୍ୟବହାରପାଇଁ ଗୁରୁକୁଳରୁ ବିଦାୟ ନେଇ ଯାଉଥିବା ଛାତ୍ରକୁ ଉପଦେଶ ଛଳରେ ବହୁ କଥା ବୁଝାଇ ଦିଆଯାଉଥିଲା । ଛାତ୍ର ଆନ୍ତରିକତାରସହିତ ପ୍ରତିଜ୍ଞାବଦ୍ଧ ହୋଇ କହୁଥିଲା–"ମାତାଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ ।" ଅର୍ଥାତ୍–ମୁଁ ହେଉଛି ପୃଥିବୀର ପୁତ୍ର ଏବଂ ଭୂମି ହେଉଛି ମୋର ମାତା । ମୋ ଜୀବନ ମାତୃଭୂମିର ସେବାରେ ହିଁ ଅର୍ପିତ । ଲୋକ କଲ୍ୟାଣଲାଗି ମୁଁ ସର୍ବଦା ସମର୍ପିତ ଚିତ୍ତବୃତ୍ତି ହୋଇ ରହିବି । ମୋର ଜ୍ଞାନ ଶକ୍ତି ବଳରେ ମୁଁ ସମଗ୍ର ବିଶ୍ୱକୁ ଉଦ୍ଦୀପିତ କରି ରଖିବି । ଗୁରୁଦେବଙ୍କ ନିକଟରୁ ପ୍ରାପ୍ତ ଶକ୍ତିଦ୍ୱାରା ମୁଁ ମୋର ରାଷ୍ଟ୍ରକୁ ସଦା ପ୍ରାଣବନ୍ତ ଓ ଜାଗ୍ରତ କରି ରଖିବି । ମୋ ଦେହରେ ପ୍ରାଣ ଥିବାଯାଏ ମୋର ଧର୍ମ ଓ ସଂସ୍କୃତିପ୍ରତି ଆଞ୍ଚ ଆସିବାକୁ ଦେବି ନାହିଁ । ଏହା ହିଁ ହେଉଛି ମୋର ପବିତ୍ର ସଂକଳ୍ପ ।

ଅତ୍ୟନ୍ତ ସରଳ ଏବଂ ସ୍ୱାଭାବିକ ପଦ୍ଧତିଦ୍ୱାରା ନିଜକୁ ଓ ସମାଜକୁ ଊର୍ଦ୍ଧ୍ୱଗାମୀ କରାଇବାପାଇଁ ଛାତ୍ରମାନଙ୍କୁ ଗୁରୁକୁଳରେ ଶିକ୍ଷା ଦିଆଯାଉଥିଲା– କେବଳ ସ୍ୱାର୍ଥ ହାସଲଲାଗି, ଧନ ଉପାର୍ଜନର ଆବଶ୍ୟକତାପାଇଁ ନୁହେଁ । ଏହି ମହାନ ଉଦାତ୍ତ ଓ ଉଦାର ଭାବନା ଯୋଗୁଁ ଦେଶ ତଥା ସମାଜର ଉନ୍ନତି

ସମ୍ଭବ ହେଉଥିଲା । ମଧୁର ଶବ୍ଦାବଳୀ ସମ୍ବଳିତ ସରଳ ବୋଧଗମ୍ୟ ଭାଷାରେ ବିଭିନ୍ନ ଦୃଷ୍ଟାନ୍ତ ଜରିଆରେ ତଥା ଯୁକ୍ତିଯୁକ୍ତ ପ୍ରଣାଳୀରେ ଯେଉଁ ଶିକ୍ଷା ଦିଆ-ଯାଉଥିଲା, ତାହା ପାଣି ଉପରେ ତେଲ ପକାଇ ଦେଲେ ଚତୁର୍ଦ୍ଦିଗକୁ ବ୍ୟାପୀଗଲା ଭଳି ଛାତ୍ରମାନଙ୍କ ମନରୁ ସମସ୍ତ ଶଙ୍କା ଦୂରକରିଦେବାରେ ସମର୍ଥ ହେଉଥିଲା ।

ଶିକ୍ଷାସମ୍ବନ୍ଧରେ ଆଜି ଆମର ଚିନ୍ତାଧାରା ସ୍ପଷ୍ଟ ନ ହେବା ଫଳରେ ଆମେ ବିଚାର–ବିଭ୍ରାଟମଧ୍ୟରେ ଗତି କରୁଛୁ ଏବଂ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରୁନାହୁଁ । ଆଜିର ଶିକ୍ଷାଲାଭର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଜୀବନ ଧାରଣପାଇଁ ଖଣ୍ଡେ ରୁଜିରୋଜିର ଯୋଗାଡ଼ କରିବା । କିନ୍ତୁ ପ୍ରାଚୀନ ଶିକ୍ଷାର ମୂଳ ଲକ୍ଷ୍ୟ ଥିଲା–ଶିକ୍ଷା ଅର୍ଥାତ୍ ମାନବ ଜୀବନୋପଯୋଗୀ ସମସ୍ତ ପ୍ରକାର ଜ୍ଞାନ ହାସଲ କରିବା ଯାହାଦ୍ୱାରା କି ମନୁଷ୍ୟ ଭଗବାନ୍ ଓ ତାଙ୍କର ସୃଷ୍ଟି ପ୍ରକ୍ରିୟା ସଂପର୍କରେ ପ୍ରକୃତ ତତ୍ତ୍ୱ ଜାଣିବାଦ୍ୱାରା ନିଜ ଜୀବନକୁ ସାର୍ଥକ କରିଦେଇ-ପାରିବ ।

ଏହି ଲକ୍ଷ୍ୟ ହାସଲଲାଗି ଶିକ୍ଷାର୍ଥୀମାନେ ଗୁରୁକୁଳର ତପଃପୂତ ବାତାବରଣ ମଧ୍ୟରେ ରହି ଗୁରୁଙ୍କ ସେବାଦ୍ୱାରା ଅଭିଳଷିତ ଜ୍ଞାନ ହାସଲ କରୁଥିଲେ । ଗୁରୁ-ମାନେ ମଧ୍ୟ ଛାତ୍ରକୁ ନିଜର ପୁତ୍ରତୁଲ୍ୟ ମନେକରି ବାତ୍ସଲ୍ୟ ପ୍ରଦର୍ଶନସହ ସେମାନଙ୍କର ସର୍ବାଙ୍ଗୀଣ ଉନ୍ନତି ଲାଗି ଉଦ୍ୟମ କରୁଥିଲେ । ସେହି ସମୟରେ ଗୋଟିଏ ଗୋଟିଏ ଗୁରୁକୁଳରେ ଦଶହଜାରଯାଏ ଛାତ୍ର ଏକତ୍ର ଅବସ୍ଥାନକରି ବିଦ୍ୟା ଅଧ୍ୟୟନ କରୁଥିବାର ପ୍ରମାଣ ରହିଛି । ଏମାନଙ୍କର ଗ୍ରାସଚ୍ଛାଦନ ବ୍ୟବସ୍ଥା ଗୁରୁକୁଳର ଆଚାର୍ଯ୍ୟଙ୍କ ପ୍ରଭାବ ଓ ଉଦ୍ୟମଦ୍ୱାରା ହୋଇପାରୁଥିଲା । ଏଥିପାଇଁ ଜନସାଧାରଣଙ୍କଠାରୁ ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ ମିଳିବା ସହିତ ଗୁରୁକୁଳର ସମ୍ମାନରକ୍ଷା ଏବଂ ଛାତ୍ରମାନଙ୍କ ଆବଶ୍ୟକତା ପୂରଣ ଉଦ୍ଦେଶ୍ୟରେ ତତ୍କାଳୀନ ରାଜନ୍ୟମଣ୍ଡଳୀ ରାଜକୋଷର ଦ୍ୱାର ସର୍ବଦା ଉନ୍ମୁକ୍ତ ରଖୁଥିଲେ ।

ଛାତ୍ରମାନଙ୍କୁ ସେମାନଙ୍କର ସ୍ୱାସ୍ଥ୍ୟରକ୍ଷାସହିତ ସ୍ୱାବଲମ୍ବନଶୀଳତା ଶିକ୍ଷା ଦେବାରେ ଆଚାର୍ଯ୍ୟମାନେ ସର୍ବଦା ସଚେତନ ରହୁଥିଲେ । ଏହାଦ୍ୱାରା ଶିକ୍ଷାର୍ଥୀଙ୍କ ମନରେ ସେବାଭାବର ଗଭୀର ପ୍ରଭାବ ପଡ଼ୁଥିଲା । ଏହା ହିଁ ହେଉଛି ପ୍ରାଚୀନ ଗୁରୁକୁଳ ଶିକ୍ଷା ପ୍ରଣାଳୀର ବୈଶିଷ୍ଟ୍ୟ ଏବଂ ପରମ୍ପରାକ୍ରମେ ଚାଲିଆସିଥିବା ଭାରତୀୟ ସଂସ୍କୃତିର ମହାନ ଅବଦାନ । ଆଜି ଏହି ବ୍ୟବସ୍ଥାର ପ୍ରତ୍ୟକ୍ଷ ଉଦାହରଣ ଅଭାବରୁ ଆମେ ଗୁରୁକୁଳର ମର୍ଯ୍ୟାଦା ହୃଦୟଙ୍ଗମ କରିପାରୁ ନାହୁଁ । ମହାନୁଭବ

ଆଚାର୍ଯ୍ୟଗଣ ଏବଂ ଶିକ୍ଷାକାମୀ ଛାତ୍ରବୃନ୍ଦ ଏକତ୍ର ବାସକରି ଅଧ୍ୟୟନ–ଅଧ୍ୟାପନ ଦ୍ୱାରା ନିଜ ନିଜର ପବିତ୍ର କର୍ତ୍ତବ୍ୟପାଳନ କରିବାରେ ହିଁ ଗୁରୁକୁଳର ମହାନ୍ ଆଦର୍ଶ ପତାକା ଉଡ଼ାଇ ରଖିପାରିଥିଲେ । ଭାରତର ତତ୍ତ୍ୱବେତ୍ତା ଋଷିଗଣ ମନୁଷ୍ୟର ଅନ୍ତର୍ଭୂମିର ଉତ୍କର୍ଷ ସାଧନଲାଗି ଏଭଳି କେତେଗୁଡ଼ିଏ ସୂକ୍ଷ୍ମ-ଉପଚାରର ଆବିଷ୍କାର କରିଥିଲେ, ଯା'ର ପ୍ରଭାବ କେବଳ ଶରୀର ଓ ମନ ଉପରେ ନୁହେଁ ଅପିତୁ ସୂକ୍ଷ୍ମ ଅନ୍ତଃକରଣ ଉପରେ ମଧ୍ୟ ପଡ଼ୁଥିଲା । ତାହାରି ପ୍ରଭାବରେ ମନୁଷ୍ୟକୁ ଗୁଣ କର୍ମ ଓ ସ୍ୱଭାବ ଦୃଷ୍ଟିରୁ ସମୁନ୍ନତ ସ୍ତରକୁ ଅଗ୍ରସର ହେବାରେ ସାହାଯ୍ୟ ମିଳୁଥିଲା । ଏହି ଆଧ୍ୟାତ୍ମିକ ଉପଚାରର ନାମ ହେଉଛି–ସଂସ୍କାର । ମହର୍ଷି ପାଣିନୀଙ୍କ ମତରେ ସଂସ୍କାର ହେଉଛି ତିନି ପ୍ରକାରର । ୧-ଉତ୍କର୍ଷ ସାଧନକାରୀ, ୨-ସମବାୟ ବା ସଂଘାତ ଏବଂ ୩-ଆଭୂଷଣ । ପ୍ରତ୍ୟେକ ମନୁଷ୍ୟ ଜନ୍ମ ବେଳେ କିଛି ଗୁଣ ଓ ଅବଗୁଣ ସଙ୍ଗରେ ନେଇ ଆସିଥାଏ । ତା' ଉପରେ ପୂର୍ବ ଜନ୍ମର ବିବିଧ ସଂସ୍କାରର ପ୍ରଭାବ ରହିବା ସ୍ୱାଭାବିକ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ନୂତନ ସଂସ୍କାରର ପ୍ରଭାବ ମଧ୍ୟ ତା'ର ସେହି ପୁରୁଣା ସଂସ୍କାରକୁ ପ୍ରଭାବିତ କରିଥାଏ । ସେଥିରେ କେତେକ ପରିବର୍ତ୍ତନ, ପରିବର୍ଦ୍ଧନ ଓ କ୍ଷେତ୍ର ବିଶେଷରେ ତା'ର ସମ୍ପୂର୍ଣ୍ଣ ଉନ୍ମୂଳନସହିତ ପ୍ରତିକୂଳ ସଂସ୍କାରମାନଙ୍କୁ ନଷ୍ଟ କରିଦେଇ ଅନୁକୂଳ ସଂସ୍କାରମାନଙ୍କର ଅଭିବୃଦ୍ଧି ଘଟାଇଥାଏ । ଏହା ହିଁ ହେଉଛି ଜନ୍ମ-ଜନ୍ମାନ୍ତରର ସଂସ୍କାରପଦ୍ଧତି । ମାତାଙ୍କ ଗର୍ଭରୁ ଜନ୍ମ ଗ୍ରହଣଠାରୁ ମୃତ୍ୟୁପର୍ଯ୍ୟନ୍ତ ପ୍ରତ୍ୟେକ ମାନବକୁ ଷୋଳଥର ସଂସ୍କାରିତ ହେବାକୁ ପଡ଼ିଥାଏ । ଏହାଦ୍ୱାରା ସେ ସାଧାରଣସ୍ତରରୁ ଦିବ୍ୟଶକ୍ତିସଂପନ୍ନ ଉଚ୍ଚତମ ସ୍ତରକୁ ଗତିକରିବାରେ ସକ୍ଷମ ହୋଇଥାଏ ।

ଗୁରୁକୁଳରେ ଦୈନିକ ଯଜ୍ଞ ସମୟରେ ସ୍ୱସ୍ୱର ବେଦପାଠ ଫଳରେ ସେହି ଉଚ୍ଚାରଣରୁ ଉତ୍ପନ୍ନ ଧ୍ୱନି ତରଙ୍ଗ ଯଜ୍ଞୀୟ ଉଷ୍ମାସହିତ ସଂଯୁକ୍ତ ହୋଇ ଅଲୌକିକ ବାତାବରଣ ପ୍ରସ୍ତୁତ କରିଥାଏ । ଏହି ବାତାବରଣମଧ୍ୟରେ ରହିଥିବା ଛାତ୍ରମାନଙ୍କ ବ୍ୟକ୍ତିତ୍ୱରେ ଅନେକ ବିଶେଷତା ଅନାୟାସରେ ପ୍ରସ୍ଫୁଟିତ ହେବା ସ୍ୱାଭାବିକ । ବ୍ୟକ୍ତିତ୍ୱର ବିକାଶଲାଗି ଏହା ହେଉଛି ଋଷି ପ୍ରଣୀତ ଆଶ୍ଚର୍ଯ୍ୟଜନକ ମନୋବୈଜ୍ଞାନିକ ପଦ୍ଧତି । ସେହିଭଳି ପୁଂସବନ ସଂସ୍କାରଠାରୁ ଆରମ୍ଭକରି–ଅନ୍ନ ପ୍ରାଶନ, ନାମକରଣ, ମୁଣ୍ଡନ, ବିଦ୍ୟାରମ୍ଭ, ଉପନୟନ, ବିବାହ, ବାନପ୍ରସ୍ଥ, ଅନ୍ତ୍ୟେଷ୍ଟି ଏବଂ ଶ୍ରାଦ୍ଧ ହେଉଛି–ଅତ୍ୟାବଶ୍ୟକୀୟ ସଂସ୍କାରମାନଙ୍କ ମଧ୍ୟରେ ପ୍ରମୁଖ ସଂସ୍କାର ।

ଏହି ସଂସ୍କାରମାନଙ୍କ ବ୍ୟତୀତ ବ୍ୟକ୍ତିତ୍ୱ ନିର୍ମାଣପାଇଁ ଉଦ୍ୟମ, ପୂଜା, ଉପାସନାର ଆବଶ୍ୟକତା ଏବଂ ବିଭିନ୍ନ ଦେବାଦେବୀମାନଙ୍କର ଆୟୁଧ ଆଦିସମ୍ପର୍କରେ ଅତି ମହତ୍ୱପୂର୍ଣ୍ଣ ଆଲୋଚନା କରଯାଉଥିଲା । ଋଷିମାନେ ଏତିକି କରିଦେଇ ନିଶ୍ଚିନ୍ତ ରହିପାଉନଥିଲେ । ସେମାନେ ସମାଜକୁ ସମୁନ୍ନତ ଓ ସୁବିକଶିତ କରିବା, ତାଭିତରେ ସାମୂହିକତା, ବିଶ୍ୱସନୀୟତା, କର୍ତ୍ତବ୍ୟନିଷ୍ଠା, ନାଗରିକତା, ପରମାର୍ଥ-ପରାୟଣତା, ଦେଶଭକ୍ତି ଏବଂ ଲୋକ ମଙ୍ଗଳରୂପୀ ପ୍ରେରଣା ଜାଗ୍ରତ କରାଇବା ଉଦ୍ଦେଶ୍ୟରେ ବିଭିନ୍ନ ପର୍ବ-ପର୍ବାଣୀର ଆୟୋଜନ, ତୀର୍ଥଯାତ୍ରା-ବ୍ୟବସ୍ଥା ମେଳା ମହୋତ୍ସବ ଏବଂ ବିଭିନ୍ନ ପ୍ରକାରର ଯାଗ-ଯଜ୍ଞର ଆୟୋଜନ ଆଦି କରଉଥିଲେ । ଏହାର ମୂଳ କାରଣ ହେଲା—ବିପୁଳ ସଂଖ୍ୟାରେ ଜନସମାଗମଦ୍ୱାରା ପରସ୍ପରର ବିଚାର ବିନିମୟ ଓ ସମର୍ଥ ମାର୍ଗ ଦର୍ଶନର ସୁଫଳ ଲାଭ ।

ବର୍ତ୍ତମାନ ସମୟର ଆହ୍ୱାନକୁ ହୃଦୟଙ୍ଗମକରି ତ୍ରୁଟିପୂର୍ଣ୍ଣ ଏହି ପ୍ରଚଳିତ ଶିକ୍ଷା-ପ୍ରଣାଳୀର ତୁରନ୍ତ ପରିବର୍ତ୍ତନ ଓ ସଂଶୋଧନ ଲାଗି ଦେଶର ମୂର୍ଦ୍ଧନ୍ୟ ବିଦ୍ୱାନ, ସନ୍ଥ, ମହାତ୍ମା, ଶିକ୍ଷାବିଦ୍, ସମାଜ ସୁଧାରକ, ଧର୍ମାଚାର୍ଯ୍ୟ ଏବଂ ଲୋକ ସେବକ-ମାନେ ଆନ୍ତରିକତାର ସହିତ ପରସ୍ପରର ମତପାର୍ଥକ୍ୟ ଭୁଲିଯାଇ ଆଗେଇ ଆସିବା ଉଚିତ । ଆମେ ଏତିକି ମାତ୍ର ଆଶା କରିବା ଯେ, ଭଗବାନଙ୍କ ଅପାର କରୁଣାରୁ ଏହି ପରିସ୍ଥିତିର ପରିବର୍ତ୍ତନ ହେଉ ଏବଂ ଭାରତ ତା'ର ପୂର୍ବ ଗୌରବ ଫେରିପାଇବାରେ ସମର୍ଥ ହେଉ । ସେହି ପ୍ରାଚୀନ ତଥା ଉପାଦେୟ ପଦ୍ଧତିର ଉପଯୁକ୍ତ ମୂଲ୍ୟାଙ୍କନଦ୍ୱାରା ଆମେ ଆମର ଅଭିଳଷିତ ମାର୍ଗରେ ଗମନକରି ପୁନର୍ବାର ଋଷିମାନଙ୍କ ଶ୍ରୀମୁଖ ନିଃସୃତ ସେହି ବାଣୀର ଜୟଗାନଦ୍ୱାରା ସଗର୍ବରେ ଘୋଷଣାକରି କହିବା—'ସା ବିଦ୍ୟା ଯା ବିମୁକ୍ତୟେ' । ସାଂସାରିକ ମୋହରୁ ମୁକ୍ତିଦେଇ ପାରିବା ବିଦ୍ୟା ହିଁ ପ୍ରକୃତ ବିଦ୍ୟା । ଶାସ୍ତ୍ରାନୁମୋଦିତ ଶିକ୍ଷାର ଅଭାବରୁ ଯେଉଁ ବିପର୍ଯ୍ୟୟ ସୃଷ୍ଟି ହୋଇଛି, ତାକୁ ପରିହାରପୂର୍ବକ ଶ୍ରୀମଦ୍‌ଭଗବତର ବାଣୀ ଉଚ୍ଚାରଣ କରି ଗାଇଉଠିବା—

ଭଗବାନ୍ ବାସୁଦେବୋହି ସର୍ବଭୂତେଷ୍ୱବସ୍ଥିତଃ
ଏତଜ୍ଜ୍ଞାନଂ ହି ସର୍ବସ୍ୟ ମୂଳଂ ଧର୍ମସ୍ୟ ଶାଶ୍ୱତମ୍ ।।

"ସକଳ ଦେହେ ନାରାୟଣ । ବସଇ ଅନାଦି କାରଣ"—ଏହାହିଁ ସମସ୍ତ ବିଦ୍ୟା ଓ ଶାସ୍ତ୍ର-ଅଧ୍ୟୟନର ସାର ବସ୍ତୁରୂପେ ସ୍ୱୀକୃତ । ଏତିକି ଜାଣିଲେ ମନୁଷ୍ୟର ଶିକ୍ଷାଲାଭ ପ୍ରକୃତ ଅର୍ଥରେ ସାର୍ଥକ ହୋଇଥାଏ ।

